# ପାଦେ ଆଗକୁ

କମଳାକାଂତ ଲେଂକା



# ପାଦେ ଆଗକୁ

କମଳାକାଂତ ଲେଂକା



ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୨

**ପାଦେ ଆଗକୁ** (କବିତା) - ଲେଖକ: କମଳାକାଂତ ଲେଂକା, ପ୍ରକାଶକ: ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ - ୭୫୩୦୦୨, ପ୍ରଥମ ପ୍ରକାଶ : ୧୯୯୪, ପ୍ରଚ୍ଛଦପଟ: ଅସିତ୍ ମୁଖାର୍ଜୀ, ଡି.ଟି.ପି : ଫିୟୁଚର ଭିଜନ୍, ୫୭୦ ମହତାବ ରୋଡ୍, କଟକ, ମୁଦ୍ରଣ : ରୟାଲ ହାଫ୍‌ଟୋନ୍, କଟକ.



**PADE AGAKU** (A Collection of Poems) - by K.K.Lenka, Publisher: Sahadev Pradhan, Friends' Publishers, Binodbehari, Cuttack - 753002, Orissa (India), First Edition : 1994, Cover Design: Asit Mukherjee, D.T.P. by : Future Vision, Cuttack - 12, Printer : Royal Half-Tone, Cuttack.

Price : Rs. 35

ISBN 81-7401-046-7

## ଏମିତି କେଇଧାଡ଼ି

ଏଥିରେ ସଂକଳିତ କବିତାଗୁଡ଼ିକ ମଧ୍ୟରୁ କେତେକ 'ଉନ୍ମୋଚନ' (୧୯୯୧)ରେ ପତ୍ରସ୍ଥ ହବାର ଥିଲା। କେତେକ ବିଶେଷ କାରଣରୁ ସେଗୁଡ଼ିକ ଏଥିରେ ଗୁନ୍ଥା ହୋଇ ପାରିଲା ନାହିଁ।

ଡକ୍ଟର ମଥୁରାନାଥ ହୋତା 'ଜୀବନତୀର୍ଥରେ କବି କମଳାକାନ୍ତ' ଗ୍ରନ୍ଥରେ ଏ କବିତାଗୁଡ଼ିକୁ 'ଉନ୍ମୋଚନ'ରୁ ଉଦ୍ଧାର କରିଥିବାର ଶ୍ରଦ୍ଧେୟ/ ଶ୍ରଦ୍ଧେୟା ପାଠକ/ପାଠିକା ଲକ୍ଷ୍ୟ କରିଥିବେ। ସେମାନଙ୍କ ଆଗ୍ରହ ଓ ଉତ୍କଣ୍ଠା ନିମନ୍ତେ ଏ ସଂକଳନରେ ସେଗୁଡ଼ିକୁ ପତ୍ରସ୍ଥ କରାଯାଇଛି।

ପାଦେ ଆଗକୁ ଯିବା ଇଚ୍ଛାରେ ବେଳେବେଳେ ଅନିଚ୍ଛାର ଏରୁଣ୍ଡି ବନ୍ଧରେ ଅଟକିଯାଏ ମଣିଷ ! ଅଥଚ ଏଇ ଅଟକବନ୍ଦୀ ଲୋକଟିକୁ କେଇ ଜଣେ ଚିହାଉଥାଏ - 'ଗୋଡ଼ ଟେକିଚୁ ତ, ଆଉ ପରୱା କ'ଣ ? ଖୋଜ ପରେ ଖୋଜ ପାଇଁ ରାସ୍ତା ତ ଚାରିଆଡ଼କୁ !' ଏମିତି ଲୋକ ଜଣକ ଶ୍ରୀ ସହଦେବ ପ୍ରଧାନ। ଫ୍ରେଣ୍ଡସ୍ ପବ୍ଲିଶର୍ସର ମାଲିକ। ସମ୍ଭ୍ରାନ୍ତ ପ୍ରକାଶକ। ତାଂକୁ ଓ ତାଂକ ଭଳି ଅନେକ ଶୁଭେଚ୍ଛୁଙ୍କୁ ଅନେକ ଅନେକ ସାଧୁବାଦ ସହ। କମଳାକାଂତ ୧୫-୪-୯୪

## ପାଦେ ଆଗକୁ

# ସୂଚୀ

[ସବୁ ପ୍ରତିଷ୍ଠିତ ପତ୍ରପତ୍ରିକାର ସଂପାଦକମାନଂକୁ ଧନ୍ୟବାଦ]

# ଶବ୍ଦ-ଅଶବ୍ଦ

ଏମିତି ଗୋଟେ
ଶବ୍ଦ ଉଚ୍ଚାରଣ କର
ଯାହାର କୌଣସି
ଅର୍ଥ ବୁଝା ନ ଗଲେ ବି
ବାରି ହବ, ଶବ୍ଦହୀନତାର
ଗୋଟେ କିଛି
ପୋଡ଼ିଯିବାର ଗଂଧ ଅଛି ।

ଏମିତି ଗୋଟେ
ଅଶବ୍ଦର ବୋଝ
ମୁଂଡେଇ ଚାଲୁଥାଅ
ଯେମିତି କେଇ ସାମ୍ନା ହେଇଗଲେ
ପାଦ ତଳେ କଚାଡ଼ି ଦେଇ
କହିବ ଅର୍ଥହୀନତାର
ବି ଗୋଟେ କିଛି
ଛାଡ଼ିଯିବାର ନିର୍ଭୁଲ
ଠିକଣା ଅଛି, ଦର୍ପଣର
ସ୍ଥିର ଉଦ୍ଦୀପନ ଅଛି ।।



# ବୁଢ଼ୀ ମା’

ତ୍ରିପଂଡ କଳା
ଛ’ଫୁଟିଆ, ଧଡଡ଼ୀ
ବୁଢ଼ୀ  ଫୁରୁ ଫୁରୁ ବାଳ-
ଝୋଟପରି ଭାଗ୍ୟ ଓ କପାଳ !

ହାତରେ ପିତଳ ଖଡୁ,
ଗୋଡ଼ରେ ବାଂକିଆ ।
ଛାମୁଦାଂତ ଦି’ଟା ନାଇଁ
ଅବଶିଷ୍ଟ ଢିଲା ମେଲା,
ଅବାଗିଆ । ଫଣ ଫଣ
ଗର ଗର, ନସର ପସର ।
ବାର ହାତ କଳା ଶାଢ଼ୀ
ଖୁବ୍ ମାନେ,
କଳା ରାତି, ମେଘର ପ୍ରାଚୀର !

ବାଡ଼ିଟିଏ ଖୁଟ୍ ଖୁଟ୍ ।
ଜାମୁକୋଳି ଟୋପା ଶବ୍ଦ
ଲୁହ ଧାର ଧାର ।
ଶରଧାରେ ଆଉଁଶଇ
ଗଛଲଟା, ନୂଆ ରାହା-
ଟାଂଗରା ପଥର ।।



# ବିଚାର

ସିଗାରେଟ୍‌ର ନିଆଁ ଝୁଲରେ
ନିଃଶେଷ ହଉଥିବା
ଅନୁଚ୍ଚାରିତ ଦୁଃଖ ପରି
ଜଳି ଯାଉଥାଏ ସମୟ । ଓ
କାଠଗଡ଼ାରେ ପ୍ରଶ୍ନୋତ୍ତର
ଆଳରେ ବଂଦୀ ହେଇଯାଏ
ବିଚାର ! ଯାହାର

ଗୋଟାଏ ଫୁତ୍କାରରେ
ଦିଆସିଲି କାଠିଟିଏ
ପୁନର୍ବାର ଜଳିଉଠେ, ଏବଂ
ଫରୁଆ ଭିତରୁ ଦାଂତ ଦେଖେଇ
ଛପିଯାଏ ଅନନ୍ୟ ଅଂଧାର,
ବେହୋସ୍ ଚିତ୍କାର ॥



# ବୋକା

ପାଉଁଶ ଗଦାରେ
ସଜନା ଗଛଟି ଉଠିଲେ
ପ୍ରଜାପତିଂକ ଭିଡ଼ !

ନଡ଼ା ଗଦାରେ
କୁଂଡା ଛତୁ ଫୁଟିଲେ
ବେଂଗୁଲିର ବାହାଘର ।

ଘରେ ମୂଷା ବା
ବିଲେଇ ଉତ୍ପାତ କଲେ
ରାତାରାତି
ଶୂନ୍ ହେଇଯାଏ ମେଜାଜ୍,
ଉଡ଼ିଯାଏ ଛପର ।।



# ରାତି ବା'ର

ଯେଉଁଦିନ
ଆଦୁ ନିଦ ଛୁଏନି
କି କିଛି ଭଲ ଲାଗେନି
ବହିଟିଏ ଖୋଲି
ଦେଖେ ତ
ପ୍ରତି ଶବ୍ଦ, ପ୍ରତିଲିପି ଓ ପ୍ରତିଟି
ଆଖି ପିଛୁଡ଼ାକୁ
ଯୋଡ଼ି ଦଉଚି ନିଦ, ଅଥଚ
ନିଦ ବଟିକାଟିଏ ଖାଇଲେ
ଉତ୍ତେଜନାର ତାତିରେ
ଫାଟି ପଡୁଚି ରାତି, ଶୀତଳ
ମାଦକତାରେ ଲେଖି ଦେଇ ଯାଉଚି
କବିତା ।।



# ଷଡ଼ଯନ୍ତ୍ର

ଶବ ପାଇଁ ଗାତ
ଖୋଳୁଥିବା ଲୋକଟି
ଜାଣେ-ଫେରିଯିବାର
ସହଜ ସୂତ୍ର । ସଂପଦ, ଓ
ଅଟ୍ଟହାସର ନିଆଁ ବଡ଼ରେ
କେତେ ଉଦାସୀନତା,
ପବିତ୍ର ସୁସ୍ଥତା ! ଅଥଚ

ଜାଲ ପାତୁଥିବା ଲୋକଟି
ଜାଣେ ନାଇଁ ଯେ
ଶବ୍ଦ ଗୋଟିକୁ ଗାତ ଗୋଟିଏ
ଗଂଠି ଗୋଟିକୁ ଅର୍ଥ କୋଟିଏ ।
ଫାଶ ଗୋଟିକୁ ଅସଂଖ୍ୟ ଖଂଜ,
ନିସ୍ତୁକ ପରିହାସ !

ଯାହା ପ୍ରମାଣ କରେ-ଜାଲ
ଗୋଟେ କୋଠରୀ, ଗାତ ଗୋଟେ
ଅଂଗୀକାର ଅଥଚ

ଶବଟି ଗାତ ଖୋଳାରେ
ବ୍ୟସ୍ତ ଥାଏ । ଜାଲ ବୁଣାରେ
ଲୋକଟି ନିଶ୍ଚୁପ ହସୁଥାଏ ।।



# ଦିଅ ନିଅ

ତଳୁ ଉପର ଯାଏ
ଉପରୁ ତଳ ଯାଏ
ଗୋଟାଏ ସିଡ଼ି ।
ଗୋଟାଏ କଥା ।
ଦିଅ ନିଅ । ନିଅ ଦିଅ ।

ଦିଆ ନିଆର ଜୀବନ
ହସ ଖୁସିର ଦୀର୍ଘଶ୍ୱାସ ।

କେଉଁଠି ଉପରୁ ତଳକୁ
ନଇଁ ପଡୁଚି ହିଂସା ତ
କେଉଁଠି ତଳୁ ଉପରକୁ
ବହିଯାଉଚି ବିଦ୍ରୂପ ।

ହେଲେ   ଯେ ନା ଦିଏ
ନା ନିଏ, ତା' ପାଇଁ
ଆସନ ଯାହା ଶାସନ ତାହା
ସ୍ୟାଲୁଟ୍ ଯାହା
ଦୋକ୍ଷରି ତାହା ।।



# ଦ୍ରୋହ

ଘିର୍‌ଘିର୍ ହେଇ
ଘୂରୁଥିବା ଚର୍କିଟି
କାଉଁରିଆ କାଠି ମୁଂଡରୁ
ଖସିଗଲା ତ
ପିଲାଟି ହାତରେ
ବଂଦୀ ହେଇଯାଏ
ଗୋଟେ ହାଁ ହାଁ ଶୂନ୍ୟତା !

ପବନକୁ
ପଡ଼ିଶା ଘର ସାଂଗ
ଭାବି
ଉହୁଂକି ପଡ଼ିଲା ବେଳକୁ
ନହୁ ନୁହାଣ ପୃଥିବୀ,
ଆକ୍‌ତା ମାକ୍‌ତା
ସଂଜର ଆକାଶ ॥



# ପୁରାଣ

ଯେଉଁ ହାଂଡିଟିରେ
ପାଂଚ ଜଣଂକର
ରୋଷେଇ ଫୁଟେ
ସେଇଟିର କ'ଣ ହେଇଯାଏ
କେଜାଣି ? ଜଣେ
ଅଧିକା ହେଇଗଲେ,
ଜଣେ ବାହାରେ
ରହିଗଲେ !

ଯେତେ ଜାଳ ଖଂଜ
ଯେତେ ଲଗାଣି ସଜାଡ଼
ଯେତେ ଫୁଂକ ନା କାହିଁକି
ଚୁଲି ଜଳେ ନାଇଁ,
ହାଂଡି ତାତେ ନାଇଁ,
ଭାତ ଫୁଟେ ନାଇଁ ।

ଯେମିତି ପାଂଚ ମନକୁ
ପାଂଚ ଜଣ ଛଡ଼ା
ଛ' ପ୍ରଶ୍ନ ଉଠିଲେ
ହାଂଡି ମାରା,
ପ୍ରଣବ ଅଶୁଦ୍ଧ ।।



# ବୁଢ଼ା

ନେଂଜରା ଆଖିରେ
ପରଳ ପଡ଼ିଥିବା ପୃଥିବୀ
ନିଦେଇ ଗଲେ
ବୁଢ଼ାଟି ଉଠେ, ଓ ମନକୁ ମନ
କ'ଣ ବକେ କେଜାଣି ?
ଦୂବ କେରାଏ ମଂତୁରିଯାଏ,
ମଲା ସ୍ୱପ୍ନ ଗଜୁରିଯାଏ,
ଛିଡା ଫେରଟିରେ
ଗଁଠେଇ ହେଇଯାଏ
ସବୁ ସହଣପଣିଆ, ସବୁ
ଆଶ୍ୱାସନା ! ଆଖିରେ

ପରଳ ପଡ଼ିଥିବା ଦୃଶ୍ୟ
ବଦଳିଯାଏ ଯେ ବୁଢ଼ାଟି
ନିଦେଇ ଗଲେ ପୁଣି
ହୁଗୁଳି ଯାଏ ସବୁ ଗଂଠି,
ବିଛୁଡ଼ି ପଡ଼େ ଯାବତ୍
ଫାଜଲାମି, ଯାବତ୍ ରେରେକାର ॥



# ଦ୍ୱନ୍ଦ୍ୱ

ହୁଏ ତ ଭାବୁଥିବ
ଏକା ଏକା    ବଂଚିବା
ଭାରି ସହଜ, ଭାରି
କପଟ ଉଲ୍ଲାସ ! ଯେମିତି
ଦୁଇରେ ଦୁଇରେ ସବୁ
ଅସହଜ, ସ୍ୱଚ୍ଛଂଦ
ବିଳାସ ।

ହୁଏ ତ ଭାବୁଥିବ,
ଏକା ଏକା    ଥିବା
ନ ଥିବାର ମୁକ୍ତ
ପବନ, ଯେମିତି
ଦୁଇ/ଦୁଇ-ସବୁ ଥାଇ
ହାତ ପାପୁଲିରେ
ନାଇଁ ନାଇଁର
ବୃଂଦାବନ ।।



# ପାପପୁଣ୍ୟ

ଦେଖୁଚି    ସାମ୍ନାରେ
ଅତିକାୟ ହାତୀଟିର
ଛାଇ ପରି ଚାଲିଚି
ମୋ ପୁଣ୍ୟ, ଯେମିତି
ଢେଉର ହୁରୁମ୍ପାପଣ
ପଛେ ପଛେ
ମୋ ସୁକୃତ, ମୋ ଭାଗ୍ୟ !

ଦେଖୁଚି    ସାମ୍ନାରେ
ସଁବାଳୁଆର
ରାଜକୀୟ ଢଂଗ ପରି
ଚାଲିଚି ମୋ ପାପ,
ଯେମିତି କୂଳର
ଅଥୟତା ପାଖେ ପାଖେ
ମୋ ସ୍ୱପ୍ନ,
ମୋ ଅନୁଶାସନ ।।



# ପ୍ରିୟ କବି

ଯେତେ ଶବ୍ଦର
ଜାଲ ବିଛାଉଥାଅ, କବି
ଭାବକୁ ସପତଣୀ
ଭାବ ନାହିଁ ।

ଯେତେ ନିରୀହତାର
ତାର ବାଡ଼ ଭିତରେ
ବଂଦୀ କରୁଥାଅ
କବିତା, ମୁକୁଳିଯାଅ ଥରେ,
ଶରତ ଡେରି ନାହିଁ ।

ଯେତେ ଉଚ୍ଚକୁ ଉଚ୍ଚ
ଉଡ଼ିଯିବାକୁ ଅକୁଂଠ ଇଚ୍ଛା
ଆକାଶ ସହ ପ୍ରତିଯୋଗିତାରେ
ଭାଂଗିପଡ଼ ନାହିଁ । ଡେଣା
କାଟି ଦିଅ । ଚୁପ୍ ରୁହ ।।



# ସଂବର୍ଧନା

ଦିନେ
ଈଶ୍ୱରଂକ ଗଳାରେ
ହଠାତ୍
ଫୁଲମାଳଟିଏ
ଝୁଲି ପଡ଼ିଲା ଯେ
ବେକ ଛିଡ଼ିପଡ଼ିଲା
ଈଶ୍ୱରଂକର ।

ସେଇ କଟାମୁଂଡକୁ
ସଭା ମଂଚରେ ଥୋଇ
ଥୋକାଏ କହିଲେ-
ଚଳେ ପାଣି ଛାଟି ଦିଅ,
ପଦେ ମଂତ୍ର ପଢ଼,
ଈଶ୍ୱର ଜୀଇଚି ।।



୬

# ଧ୍ୱନି

ଯେଉଁଦିନ
ପୃଥିବୀଯାକ କବିତା
ନିଆଁଝୁଲ ପରି
ବିସ୍ତରି ଯିବ
ମଣିଷପଣିଆର କ୍ଷେତକୁ,
ଠେକାଟିଏ ପିଂଧି
ଦା'ଟିଏ ଧରି
ଚେକାସନରେ କବି
ଚାହିଁ ରହିବ
ଦିଗ୍‌ବଳୟର
ଅଂଟାତଳ
ମେଘ ପଟଳକୁ ।।



# ବାଟ

ଯେଉଁଠି ପାଦ
ଥୋଇଲ,
ଜାଣ-ସେଇଟି
ତମର ବାଟ । କଂଟାଝଟା
ଖାଲ ଖମା
ସମତଳ, ଅସମତଳ
ସବୁ କିଛି ତାର
ପରିଧି । ଘଟଣା ଦୁର୍ଘଟଣା,
ସଂଚୟ, ଅପଚୟ । ନିଜେ

ନିଜ ଅକ୍ତିଆରରେ
ଥିଲେ
ପାଦ ଯେଉଁଠି ପଡୁ !



# ଶହୀଦ୍

'ଆତ୍ମାର ସଦ୍‌ଗତି
ହଉ' ପଦକରେ
ଆଂଜୁଳା ପୂରିଯାଏ
ପବନର । ଶୋକର ତଳେଇ
ଘେରା ନିରବତାର । ଶୂନ୍ୟରୁ

ଚିତ୍କାର କରେ ଶୂନ୍ୟତା
ଏ ନିଗୂଢ଼ ଓ ଦୁରୂହ ଆତ୍ମାକୁ
ତମେ ଫେରେଇ ନିଅ ।
ନିଜ ହେପାଜତ୍‌ରେ ରଖ ।

ପାରିଲେ, ଜାତୀୟ ପତାକା
ଭିତରେ ଫୁଲ ତୋଡ଼ା ଭଳି
ସାଇତି ରଖ
ଗୋଟାଏ ବର୍ଷ । ଜନ୍ମ ଦିନର
କବର ଖୋଳା ପର୍ଯ୍ୟଂତ ।।



# ଚରିତ୍ର

ଗୁଳିଗୁଳା, ଆଇନ୍‌କାନୁନ୍
କିଛି ଲୋଡ଼ା ନାଇଁ ।
ଉତ୍ତମର୍ଣ୍ଣମାନେ
ବୁଝଂତି
ଏ ସବୁର ସମର୍ଥ
ମାନସିକତା । ତେଣୁ
ପରଷା ଯାଇଥିବା
ଦିବ୍ୟ ଘିଅ ଅନ୍ନରେ
ଟୋପେ
କିରୋସିନି ଯଥେଷ୍ଟ ।।



# ଦୌଡ଼

ସବୁ କିଛି
ନିରୁପଦ୍ରବ ଶବ୍ଦଂକୁ
ସହିନବାର
ଗୋଟେ ଅକାରଣ
ଚାଞ୍ଚଲ୍ୟ ଅଛି । କାରଣ
ମା' ଓ ମାଟି ପରି
ସେ ବୁଝିପାରେ
ମଣିଷର ଦୌଡ଼
କେତେ ବାଟ !



# ନିର୍ଦ୍ଦିଷ୍ଟ

ମା ପେଟରେ
ଯେମିତି ଭ୍ରୂଣ
ସରାପ ଭିତରେ
ଯେମିତି ସତ୍ୟ,
ଭୁଲ୍ ଭିତରେ
ନିଜର ସାନ୍ନିଧ୍ୟ ।
ଯେମିତି ପେଟ୍‌ରା ଭିତରେ
ସାପ, କବିତାରେ
କବି, ଓ ମୌନତାରେ
ବିଦ୍ରୋହ ॥



# ଗୁହାଳ

ଗହଳି ଯାହା,
ଗୁହାଳ ତାହା ।
ମଂଦିର ଯାହା,
ମଦିରା ତାହା ।
ଖେଳ ଯାହା,
ଖଇ କଉଡ଼ି ତାହା ।
ସ୍ମୃତି ଯାହା । ଗୁଜବ ତାହା ।

ଅର୍ଥାତ୍ ଘୋଳି ହଉଥିବା, ସଂତୁଳି ହଉଥିବା
ମଶା ମାଛି ତାଆଁଶଂକ ରକ୍ତରେ ଖୁଜୁବୁଜୁ
ଖରାର ନିହଣ ; ଅର୍ଥାତ୍ ଆସ୍ତେ ହାଉଲେ
ଓହ୍ଲାଇ ଆସେ ସଂଜର ଧୂଆଁବାଣ ।।



# ଗରଜ

ସବୁ ପୋଥିରେ
ଲେଖକୀୟ ଚାଲବାଜି,
ମଥା କୁଂଡାଇବା ଫେସନ !

ମୋର କି ଯାଏ
ଯଦି ଠିକ୍ ଅଛି
ବେଠିକ୍ ସହ ସଂଳାପ,
ରୋକ୍ଠୋକ୍ ଜବାବ୍କୁ
ମଥାଟିଏ ଉପହାର ॥



# ଉପସଂହାର

ହାତ ବଢ଼ାଇ ଦଉଚି,
ଦେଖ   ଦିଗଂତର
ଶେଷ ପକ୍ଷୀ ପରି
ମୋ ସ୍ୱପ୍ନ, ସାଂତ୍ୱନା,-ତମେ ।

ଉଡ଼ି ଯାଉଚି ମୋ ଭାଗ୍ୟର
ସୁସଂଚ ଅଂଧାରର
ବସାକୁ, ରହସ୍ୟର ନିୟତିକୁ :

ଯଉଁଠି ତମ ଭଲ ପାଇବାର
ଶେଷ ଶବ୍ଦ
ସ୍ତବ୍ଧତାର ଶେଷ ସ୍ତବକ
ପ୍ରତ୍ୟାଶାର ଡେଂଫରେ
ନହକି ପଡ଼ିଚି
ଆକାଶର କାଂଥିକୁ, ମୋ
ଧୈର୍ଯଶୀଳ ବୁଝାମଣାର
ଈର୍ଷାର ଗଜଲକୁ ॥



# ଦୁଇଟି କବିତା

## ୧।। ସୁଅ

କୁଂଚକାନି ଧରି
ଚାଲୁଥିବା ଯାଏ
ସବୁ ଠିକ୍ । ବେଠିକ୍‌ର
ପେଡ଼ି ପୁଟୁଳାରେ
ସାଲୁବାଲୁ ଉଇ !

ହାତ ଖସିଗଲା ତ
ମଥାକୁ, ବିଚାରଶୀଳତାକୁ-
ହୁଂକାଟିଏ ଭଳି
ସମୟ, ବହିଯାଉଥିବା
ବଚନିକାର ପାରାୟଣ ।।

## ୨।। ମଂଜି

କଥାରେ ନଥା
ଖୁଂଜିଲେ
ପୋଥିଟିଏ । ଅଥଚ
ପୋଥି ଘାଂଟିଲେ
ବାଇଗଣ ମଂଜିର
ହସ୍ତାକ୍ଷର ପରି
ଶିଶୁତ୍ୱ ।।

●

# ଭୂତ

ହାତ କାଟି
ଧାଡ଼ିଏ ଲେଖିଦେଲି
'ମୁର୍ଦ୍ଦାରଟିଏ ଶୋଇଚି'
ଯଉଁଠି ଅନାବନା
ବଗିଚାଟିଏ ଥିଲା, ଅନଂତ
ନୀରବତାର ଫୁଲ
ମହକୁଥିଲା ।

ଯାଉଥିବା ବାଟୋଇ
କ୍ଷେତରୁ ଫେରୁଥିବା କୃଷକ
ଜେଗା ଘରକୁ ବାହାରିଥିବା
ମଲ୍ଲ, ବାଟବଣା ସଇସ,
ଖେଳୁଥିବା ଯୁଆନମାନେ
ଭାବିଲେ ଫୁଲ ଝଡ଼ିଗଲେ
ମୁର୍ଦ୍ଦାର ଉଠିବ । ଚାଲ-
ନୀରବତା ସହ କଥା ହବା !

ଚୁପ୍‌ଚାପ୍ ଫିସ୍‌ଫାସ୍ ହେଲେ ଯେ
ହଠାତ୍ ଲେଖା ହେଇଥିବା
ଧାଡ଼ିଟି ବଦଳରେ ପଢ଼ିହେଇଗଲା
'ମୁର୍ଦ୍ଦାରମାନେ ଖଂଡା ଖେଳରେ ମାତବର' ।

ସଭିଏଁ ଚିହିଁକି ଗଲେ ।
ଅତର୍କ୍କରେ କେ କୁଆଡ଼େ
ପଳେଇଲେ ।।



# ଘଣା

ଶୃଂଗ ଉପରୁ
ଆଖି ମୁଦି ଦେଖୁଚି
ପ୍ରତ୍ୟେକଟି ଶବ୍ଦ
ଗୋଟେ ଗୋଟେ ଘଣା : ଯାହାକୁ
ତେଲୀ ବାପୁଡ଼ା
ହଡ଼ା ବଳଦ ପରି
ଡବ ଡବ ଦୃଷ୍ଟିରେ,
ଅସରା ଅସରା ବର୍ଷା ମାଡ଼ରେ
ପଚାରୁଥାଏ  ନିମ ମଂଜିରୁ
ଦୁଃଖ କେମିତି ମାଦଳ ହୁଏ ?
କରଂଜ କାଂଟିରେ କେମିତି
ଦୀପଟିଏ ଜଳିଉଠେ !!



# ଅପାରଗ

କାଇଁ କେତେ ଦୂରରୁ
ଡାକଟିଏ ଶୁଭୁଚି !
କାନ ବଂଦ କରିଦବା
ସବୁଠୁଁ ଉତ୍ତମ, ନିରାପଦ ମୂର୍ଖତା ।
ନିଚ୍ଛଠି ନିଜେ ଅଟକି
ଗଲେ କେତେ ଗହୀରକୁ
ଠେଲି ଦଉଚି ଶ୍ୱାସ ।
ନାକ ବଂଦ କରିଦବା
ସବୁଠୁ ଅସହଜ, ଭୟଂକର ।

ଦେଖ୍ ପାରୁଥିବା
ଦୃଶ୍ୟଟିଏ ପରି ଆଖି
ଯୋଡ଼ାକ ଚକ୍ ଚକ୍ ଧାରୁଆ
ଛୁରୀ ଭଳି
ଭେଦି ଯାଉଚି ନିରୀହତାର
ଅଂତ ନାଡ଼ିକୁ  ଆଖି
ବଂଦ କରିଦବା ସବୁଠୁ
ନିରପରାଧ ଅଜ୍ଞତା !

ଅସମର୍ଥ ଶାସନର
ନିଛକ ତାଗିଦ୍‌କୁ
କିଂଏ କହେ ଆସକ୍ତି ତ
କିଏ ବୁଝେ ପାରଗତା ।।



# ଛୋଟା

ସୁବିଧା ଓ ସୁଯୋଗର
ସ୍ତୂପରେ ଭାସୁଥିବା ଲୋକେ
କହିବେ  ପୃଥ୍ୱୀ ରସାତଳକୁ
ଗଲା ତ ଜଣେ ମାତ୍ର ବଂଚିଚି !
ଯାହାର ଏକୁଟିଆ ଯୁଦ୍ଧ
ଭଲ ପାଇବାର ଗର୍ବ, ନିଜକୁ
ନିଜେ ବର୍ଷ ବର୍ଷ ବିଦାରି, ବିଦୀର୍ଣ୍ଣ କରି
ନିରାଶ୍ରୟ ଆକାଶ, ଭଂଗା
ଆଶା ବାଡ଼ିଟିରେ ଅବଶିଷ୍ଟ
ଆଶିଷ ସହ ଜୀବନ ।

ଏଣିକି ନାଳ ନର୍ଦ୍ଦମା
ମଝିରେ ନୀଳ କଇଁଟିଏ
ଫୁଟି ପାରିଲା ତ ହସ୍ତୀନାରୁ
ଶ୍ରାବଂତୀ ଘୂରି ଆସେ
ପ୍ରିୟତମ ଦିନ, ସଂକ୍ଷିପ୍ତ
ଶବ୍ଦଟିଏ-ହୃଦୟ ।।



# ତିର୍ଯ୍ୟକ୍

ପବନରେ
ଉଡ଼ି ଯାଉଥିବା
ଖଂଡେ ଚିରା କାଗଜ ଭଳି
ଦେଶର ଭବିଷ୍ୟତ,
ସିଗାରେଟ୍ ଧୂଆଁରେ
ପହଁରି ଯାଉଥିବା
ଅନୁଭୂତିର ବାସ୍ନା ପରି
ଲୋକଂକ ଭାଗ୍ୟ,
ମାଟି ତଳେ
ଯୁଦ୍ଧ ରତ
ବୀଜଟି ପରି
ଅବଶିଷ୍ଟ ଆୟୁର ପ୍ରତିଶ୍ରୁତି

ଯଦି ପାରୁଚ
ବାଟ ଛାଡ଼ିଦିଅ
ପବନକୁ, ଭାଗ୍ୟକୁ,
ପ୍ରତିଶ୍ରୁତିର ଦାର୍ଶନିକତାକୁ

ଉଡ଼ି ଯାଉଥିବା
ଖଂଡେ ଚିରା କାଗଜର
ଅଗ୍ରଲେଖକୁ ॥



# କଂଟା ଗଛରେ ଫୁଲ

ଦେଖ   ଭୁଲ୍ ବୁଝିବା-ଛଡ଼ା
ଅନ୍ୟ ବାଟ, ନୀରବତାକୁ
ଘାଂଟିବା ଛଡ଼ା
ଅନ୍ୟ ଉପାୟ, ବିଦ୍ରୂପର
ନିଶ୍ଚେଷ୍ଟ ତତ୍ପରତା ଛଡ଼ା
ଅନ୍ୟ ବନ୍ଦରର ନିରାପତ୍ତା
ନାହିଁ ମୋର । ନାହିଁ ତମର ।

ଆମ ମୁକ୍ତିର ଅଧମ ପଦାବଳୀ
ଆମ ତୃପ୍ତିର ସର୍ବଗ୍ରାସୀ ପୂର୍ଣତା
ବଂଧା ରଖିଚୁ
ଚତୁରତାର କୁବେରଠି

କାଳେ ଯୋଡ଼ି ହେଇଯିବ
କାଳେ ଯୋଜନରୁ ସଂଯୋଗ
ଫେଡ଼ି ହେଇଯିବ   କାଳେ

କଂଟା ଗଛରେ ଫୁଲ ଫୁଟିବ ॥



# ପ୍ରତିଶ୍ରୁତି

ଯେତକ
ହଜିଗଲା ବୋଲି
ଭାବୁଚ
ଇଚ୍ଛାରେ ବା ଅନିଚ୍ଛାରେ
ସୁଅରେ ବା କୂଅରେ
ସେତକ ପୁଣି ଆପଣାଛାଏଁ
ଫେରି ଆସିବ
ତମ ପାଖକୁ, ଯେବେ

ତମେ ତମ ପାଖରୁ
ଘୁଂଚି ଯାଇଥିବ
ଆଂତରିକତାରେ ଅଂତତଃ
କିଛି ବାଟ । ଅଂତତଃ
ନିଜଠୁଁ ନିଜେ
ଚାଲି ଆସିଥିବ
ଦୀପାଲୋକରେ ସବା ଶେଷ
ତରାଟିର
ବାହୁନା ପର୍ଯ୍ୟଂତ ।।



# ନିଷ୍ଠୁର

ପିଂପୁଡ଼ିଟି
ଶହୀଦ ହେଲାବେଳେ
ସମ୍ରାଟ୍ ଜଣକ
ବେପରୁଆ,
ଉଦାସ ବାଟୋଇ !

ହାତୀଟି
ମଂଥି ଦେଲାବେଳେ
କଦଳୀ ବଣ,
ପିଂପୁଡ଼ିଟି
ବେଶ୍ ଆତ୍ମସ୍ଥ
ବିଜ୍ଞ, ପଳାତକ ।।



# ସଂସାର

ଯେତେ ପାଇଚ
ତା'ଠୁଁ ଅଧିକ ଯେତେ ପାର
ଦେଇ ଯାଅ  ଯେମିତି
ଜଣେ ହେଲେ
କହିବ ନାଇଁ-ଦାୟଗ୍ରସ୍ତ,
କୃତଘ୍ନ ।

ଯେତେ ନେଇଚ
ତା'ଠୁଁ ଅଧିକ ଯେତେ ପାର
ଥୋଇ ଯାଅ  ଯେମିତି
ଜଣେ ହେଲେ
କହିବ ନାଇଁ-ଅହଂକାରୀ,
କପଟ ଆଚାରୀ ।

ଯେତେ ଅପଚୟ କରିଚ
ନିଜକୁ, ନିଜ ସମର୍ଥ
କ୍ଷମାକୁ, ତା'ଠୁଁ
ଅଧିକ ଯେତେ ପାର
ସଂଚୟ କରି ଯାଅ  ଯେମିତି
ଜଣେ ହେଲେ
କହିବ ନାଇଁ-ହୃଦୟ ଗୋଟେ
ଚୋର ! ଜୀବନ
ମୃତଦାର ।।



# ଦାଦାଗିରି

ଖୁବ୍ ବେଶି ହେଇଗଲା
ରେ ପୁଅ ।
ମୁହଁ ଖରାପ କରିବୁ
ତ
ସଇତାନକୁ ଚିହ୍ନିବୁ ।

ବେଶି ବକ୍ ବକ୍
ହବୁ ତ
ଏଇ ଦେଖ୍, ଚକ୍ ଚକ୍
ଦାନ୍ତୁଆ ଛୁରୀ ।

ଛୁରୀରେ ଘାସ କେବେ କାଟିଚୁ ?
ଛୁରୀରେ ଏପ୍ଲ ଛଡ଼ାଇଚୁ ?
ଛୁରୀରେ ନଖ ଧାରୁଆ ହୁଏ ରେ ପୁଅ ।
ଛୁରୀରେ ନିଶ ପଚ୍ଚାଯାଏ ।

ଶଳା, ବେହିପୋ !
ଛୁରୀ ଦେଖଉଚୁ, ଛୁରୀ ।
ଯାଃ-
ଢେର୍ ଦେଖିଚି ଏମିତି
ସଇତାନକୁ
ଯେ ଯେସାକୁ ମୁତ୍‌ଫର୍କା
ଓ
ତେସାକୁ ଦାଦାଗିରି ॥



ପାଦେ ଆଗକୁ

# ଗେହ୍ଲାପୁଅ

ଏଠୁ କୁଟା ସେଠିକୁ
ନ ଉଠାଉଥିବା ପିଲାଟି
ପରି ଚଉକସ ଚେହେରାରେ
ହାଇ ମାରୁଥିବା ବୟସକୁ
ଯଦି ପଚାର  ବାବୁରେ, ତାରା ଗଛଟିକୁ
ଉହାଡ଼ କରୁଥିବା ସୂର୍ଯ୍ୟ
ଛେଳିଟି ସହ ଶତ୍ରୁତା କଲେ
ଚେର ସଂଧିର ଖତୁଆ ବୀର୍ଯ
କେଉଁଠି ଥାଏ ? ଉତ୍ତର ମିଳେ

ପବନ ଓ ପାଣିର ହିଂସ୍ରତା ଛଡ଼ା
ମା'ମାନଂକର ଅକାରଣ ମୃତ୍ୟୁ
ପ୍ରସବ ଯଂତ୍ରଣା ଛଡ଼ା ପୃଥିବୀଯାକ
ନାଗ ଅଇରୀ ବଂଶ  ଯେଉଁଠି
ଭାଗ୍ୟ କହିଲେ ବୁଝାଯାଏ-ଶିମୁଳି
ତୁଳାର ଉଦ୍‌ବାର୍ଯ ଫୁର୍ତ୍ତି,
ବାଧା ବଂଧ କହିଲେ-
ଖାଇ ପିଇ ଶୋଇ ରହିବାର
ନୀରବ ବିଦ୍ରୋହ, ଉଚ୍ଚାଟ ସ୍ଥିରତା ।।



# ହାତ

ମୋର
ସାଂଘାତିକ ଭୟ
ତମକୁ  କାଳେ ତମ
ଅଦେଖା ହାତର
ନିଷ୍ଠୁର ଗେହ୍ଲାପଣିଆ
ଝଡ଼ାଇ ଦବ
ଅନନ୍ୟ ଦୁଃଖର ପତ୍ର
ସବୁଜ ଶାଖାରୁ, ପଲ୍ଲବିତ
ଅଂଧତ୍ୱର ଶୋଭାଣିଆ ଗଛରୁ !

ମୁଁ ସବୁବେଳେ
ଜର୍ଜରିତ ତମ ଆଶଂକାରେ
କାଳେ ତମ ଅନୁଗ୍ରହର
ଛୋଟ ହାତ
ଛାଇ ପରି ଧୀରେ
ଲଂବି ଆସିବ କ୍ଷେତର
ଔଜ୍ଜଲ୍ୟରୁ, ଓ ତୋଳି ନବ
କବିର ଫସଲ
ରାତି ନ ପାହୁଣୁ ॥



# ପୋଷା କୁକୁର

କୁକୁର ପରି ବିଶ୍ୱସ୍ତ
ଜୀବଟିଏ
ମୋ ଦୁଃଖ । ବଂଧୁ ପରି
ପୁରୁଣା ପ୍ରେମର
ପାସ୍‌ପୋର୍ଟ ପରି
ମୋ ଜୀବନ । ଏବଂ

ଦୁଃଖ ପରି ଅନୁଗତ
ମୋ ପ୍ରଭୁତ୍ୱ । ନିଃସଂଗତା
ପରି ବଂଧୁ-
ମୋ ପ୍ରେମ । ଜୀବନ ପରି
ବିଶ୍ୱସ୍ତ ଓ ମୃତ୍ୟୁ
ପରି ନିର୍ଲଜ ସମୟ,
ଦୁଃସମୟ ॥



# ଅହଂକାର

ରାତି ପାହୁ ନାହିଁ ତ ?

ଅଂଧାର ନ କଟିଲେ
ଫୁଲ ଫୁଟିବ ନାହିଁ ।

ଫୁଲ ଫୁଟିବା କ'ଣ ଦରକାର ?
ରାତିରେ ଯେଉଁ ଫୁଲ୍ ଫୁଟେ
ତା' ଦୃଶ୍ୟାଂତରରେ
ହଜି ଯାଏ ।

ଯେଉଁ ଅଂଧ
ଆଖି ଫୁଟାଇ ଦିଏ ସୂର୍ଯ୍ୟର
ତାକୁ କେଇ ଚିହ୍ନେ ନା !

ଅଂଧଇଁ ଫୁଲର ସଂଜ ।
ସଂଜଇଁ ଫୁଲର ଅଂଧାର ।
ଫୁଲଇଁ ରାତିର ଅହଂକାର ॥



# ପ୍ରତିଲେଖ

ଅବିକା
ମୋ ହାତପାଆଂତାରେ
ଯଉଁ କବିତାଟି ଅଛି
ସେ ତମେ । ତମକୁ
କବିତାଟିଏ
ଉପଢୌକନ ଦବା
ଅର୍ଥ-ତମ ସହ
ଏକାଂତରେ କିଛି କଥା ହବା,
ଓ ଖୁବ୍ ବେଶିରେ
କ୍ଷମାମୟ ଦିନଗୁଡ଼ିକ ମଥାରେ
ଗୋଟେ ଦୁର୍ଲଭ
ବିହ୍ୱଳତାର
ମୁକୁଟ ପିଂଧାଇବା ।

ଅବିକା
ଯଉଁ କବିତାଟି
ଜନ୍ମ ଜନ୍ମର
ଅହଂକାରର ଚେରରୁ
ଅଥଳତାର ଗହୀର
ମାଟି ଭିତରୁ ବାସ୍ନା ବାରୁଚି
ତାର ନିର୍ଦ୍ଦିଷ୍ଟ ପ୍ରତିଦ୍ୱଂଦ୍ୱୀ
ତମେ । ତମେଇଁ

ମୋ କବିତାର
ନିରଂକୁଶ ଆୟୁଷ ।।



# ଆଭରଣ

ହାତ ହଲାଇ ବିଦାୟ
ମାଗୁଥିବା ଲୋକଟି
ଜାଣେ ନା
ସେ କାହାକୁ ଡାକୁଥାଏ ।
କାନ ଡେରିଥିବା
କୁକୁରଟି
ଜାଣେ ନା କେମିତି
ମୁନିବ ନିଦ ଯାଏ ।
ଗୀତ ଶିଖିଥିବା
ପକ୍ଷୀଟି ଜାଣେ ନା
କେତେବେଳେ, କଉଁ ଛଟକରେ
ତାଳ, ମାନ, ଲୟ
ହଜିଯାଏ !

ଅଥଚ
ବୁଝାଯାଉଥିବା
ପ୍ରାସଂଗିକତାକୁ
ଢାଂକି ରଖେ
ଅସହାୟତାର ଡ଼ର ।
ଯେ ହୁତ୍ କହିଲେ
ସବାର, ଆ'
କହିଲେ-ଫେରାର୍ ।।



# ପିଇ ସାରିଲା ପରେ

ପ୍ରଚୁର ପିଇ ସାରିଲା ପରେ
ଡାକିଲି ପକ୍ଷୀକୁ ।
ପକ୍ଷୀଟି ଗୀତଟିଏ ଗାଇ
ଉଡ଼ିଗଲା । ନିର୍ଜନତାର
ଘୁଂଗୁରପିଂଧା ପୁଷିଟି
ଢୁଳେଇଗଲା ନିଭୃତରେ ।

ବହେ ହସି ସାରିଲା ପରେ
ଡାକିଲି ଆକାଶକୁ !
ଆକାଶ ତୁନି ପଡ଼ିଗଲା
ଅସରାଏ ବର୍ଷାରେ !

ଉଷ୍ମ ଗେହ୍ଲାବୋଧକୁ
ସାଉଁଟି ନେଲା ପବନ ।

କାଂଦିବା ପାଇଁ
ଖୋଜିଲି ଶବ୍ଦ ଖୋଜିଲି
ଦୁଃଖଂକ ପ୍ରତିଶବ୍ଦର
ଅଭିଧାନ । ଜୁଳୁଜୁଳିଆ
ପୋକଂକ ଆଲୁଅରେ
ଅଂଧ ହେଇଗଲା
ପୃଥ୍ୱୀ । ଦୁଃଖ ଭୁଲିଗଲା
ଐଶ୍ୱର୍ଯ୍ୟର ସିଂହାସନ ।।



# ଡର

ପାହାଚ ତଳେ
ବସିଥିବା ଲୋକଟି
ହଜାରଟେ ପଦେ କହେ
ଯେମିତିକି ଆକାଶଟା
ଭାଂଗି ପଡ଼ିଚି ମଥାରେ, ସମୁଦ୍ର
ଲଂଘି ଆସିଚି ନିରୁପଦ୍ରବ
ଶବ୍ଦରେ ତା' ପାଦ ପାଖକୁ,
ପାହାଚ ତଳର ଦୂବ କେନାକୁ ।
କବିତା ପରି ବାସୁଥିବା
ଚଉଦ ଭୁବନର ନାରଖାରକୁ :

ତାକୁ ଭୁଲ୍‌ରେ କବି ବୋଲି
ଜାଣିବ ତ ପାହାଚ ଉପରୁ
ହସୁଥିବା ଥାଟ ଲୋକଟା
କ'ଣ ନାଇଁ କ'ଣ କରି ବସିବ ।
କ'ଣ ନାଇଁ କ'ଣ ଘଟାଇ ଦବ
ତୁଚ୍ଛାରେ, ନିଜକୁ ନିଜେ ଡରୁଥିବା
ବଡ଼ପଣର ଧିକ୍‌କାରରେ !

ତେଣୁ ପାହାଚ ତଳେ
ଡଂକଉଥିବା ଦୂବ ପଗି
ଉତୁରି ଯାଉଥିବା
ଅଭିମାନର ଗୋପନ ସଂବୋଧନ ପରି

ସେ ସେମିତି ବସିଥାଉ,
ତାକୁ କବି ବୋଲି ଚିହ୍ନ ନାଇଁ ।
ନିଛକ କବିତା ବୋଲି
ଡର ନାଇଁ ॥



# ଝାପ୍‌ସା-ଝାପ୍‌ସା

ଯଉଁଠି ପଦୁଟିଏ
କହିଲେ
ଉଡ଼ିଯାଏ ରସିକତା,
ହୁଁଟିଏ ବୋଇଲେ
କଢ଼େଇ ଯାଏ
ଅରସିକତାର ଡଂକ,
ଚୁପ୍ ରହିଲେ
ବର୍ଷିଯାଏ
ଦୋଦୋପାଂଚ ସଂଦେହ-
କାଲୁଆ ହେଇଯାଏ
ରଗ ରଗ ଉତ୍ତାପ
ଘାଲେଇଥିବା ସ୍ୱାଧୀନତା

ସେଠି ଭାବରେ ଅଭାବ
ଯାହା, ଅଭାବରେ
ଭାବ ତାହା-ଖୁଂଟ ଭଳି
ଚାଲିବା ତାହା ।

ଅଜବ୍ ସ୍ୱପ୍ନରୁ
ଉଠି ଆସିଥିବା
କୁହୁଡ଼ିଆ ସକାଳ ତାହା ॥



# ତମରି କରୁଣା ପ୍ରଭୁ

କହିଲି-ପ୍ରଭୁ, ମତେ
ଅଂଧ କରିଦିଅ । ତମେ
ଆଉ ଗୋଟିଏ
ଆଖି ଦେଇଦେଲ ।

କହିଲି-ପ୍ରଭୁ, ମତେ
ଗୋଟେ ଭାଷାତୀତ ରାଜ୍ୟକୁ
ନେଇଯାଅ । ତମେ
ଭାବ ରାଜ୍ୟରେ
ସମ୍ରାଟ୍ କରିଦେଲ ।

କହିଲି-ପ୍ରଭୁ, ମତେ
କୁହୁକ ମୁକୁଟଟିଏ,
ରଥଟିଏ ଦିଅ । ତମେ
ଅଥଳ ସମୁଦ୍ରକୁ
ଫିଂଗିଦେଲ । ପ୍ରବାଳଟିଏ
କରିଦେଲ ।।



## ଭିଡ଼

ଅବେଳାରେ
ଏମିତି କେଇ ଆସିବା
ଜଣା ଥିଲେ, ହୁଏତ
ମୁଁ ନ ଥାଂତି
ନିଜ ଠିକଣାରେ ।
ଗୋପନୀୟତାର
ଦୁର୍ଲଭ ମଗ୍ନତାରେ ।

ଅଭଦ୍ର ପବନ ଭଳି
କବାଟ ଫାଂକରେ
ଯେ କେଇ ଉଂକି ମାରୁ,
ଜୀଅଂତା ସ୍ମୃତି ପରି
ଠକ୍ ଠକ୍ କରୁ ବଂଦ ଶୂନ୍ୟତା,
ମୁଁ ଶୁଣିବି ନାଇଁ
କାନେଇବି ନାଇଁ
କାହାରି କଥା । କାହାରି
ଅନୁଯୋଗ । କିଏ

ଅବେଳାରେ ଆସୁଚି ତ
ଆସୁ ! କିଏ ନିରୀହ ଅପେକ୍ଷାରେ
ସାରା ସକାଳ
ବିତାଇ ଦେଉ ।।



# ଲୀଳା

ରାହାଟିଏ ଧରିଲି ।
ଓ ବୁଝିଲି ତ୍ରୁଟିର ଆଖିରେ
ସଠିକ୍ ଖେଳରେ
ନିଜର ଆୟତନ । ଯେମିତି
ପଂକର ପିଂଡରେ ସୂର୍ଯ୍ୟ,
ଲୁହର ଅଠାରେ ଜୀବନ ।

ହାଇଟିଏ ମାରିଲି,
ଓ ଦେଖିଲି ଧୂଳି ଭିତରେ
ମଜା ସଂଧିରେ
ପୂଜା ବେଦୀର ହଟ୍ଟଗୋଳ !
ଯେମିତି ମଶାଣିର
ନିଆଁରେ
ଚଂପାଫୁଲ । ଅଂଧାର
ଡୋଳାରେ
ସକାଳ ।।



# ବୋମାପଡ଼ିବ

ରାତି ହେଲେ
ଘର ଚାରିପଟେ
ପହରା ଦେଉଥିବା ଅଂଧାର
ତରାମାନଂକୁ
ଉଠାଇ ଦିଏ ନିଦରୁ । ଓ
ମୋତେ ବସାଇ ଦିଏ
ଚଉକସରେ
କଂକାଳମୟ ଦେହର
ପଲଂକରେ ଯାହା
ପ୍ରତିଟି ପଥୁରିଆ ଆବେଗକୁ
କାନେଇଥାଏ/ତାଚ୍ଛଲ୍ୟରେ
ତୁନିତାନି କୁରୁଳୁଥାଏ
ଉହାଡ଼ରେ, ସହୃଦୟତାର
ହଳଦୀ କ୍ଷେତରେ ।

କୋଳାହଳ ବାଂଫେଇ ଗଲେ
ସ୍ୱପ୍ନରେ
ଚିତ୍କାର କରେ ଘରବାଲା, ଓ
ମୁଁ କହେ : ଟ୍ରେଂଚ୍ ଭିତରେ
ବଂଚି ଯାଅ,
ଅବିକା ବୋମା ପଡ଼ିବାର
ସଂବାଦ ମିଳିଚି ॥



# ଚିହ୍ନାମୁହଁ

ଚିହ୍ନା ମୁହଁକୁ
ଚାହିଁଲେ
ଧୂଆଁଳିଆ ବଳୟ ।

ଉତ୍ତାପଭରା
ସଂବୋଧନକୁ ଚୁମା ଦେଲେ
ଇଡ଼ିଯାଏ ସର୍ତ୍ତ,
ଯେମିତି ଧୂଆଁ ଭିତରେ
ନିଆଁର ଈଶ୍ୱର ।
ନିଆଁ ଭିତରେ
ଇଂଦ୍ରଧନୁର ଆକାଶ !

ନୀରବତାର ବଂଧ
ଭାଂଗି ଦିଅ ।
ହସ ଭିତରୁ
ମୁକୁଳିଯାଅ ଶୋକଂକ
ଆତ୍ମୀୟ କୁହୁକରେ ଯେମିତି

ନିଜ ଅନୁପସ୍ଥିତିରେ
ବୁଝିହୁଏ ନିଜର ସ୍ଥିତିକୁ,
କୁଟା ଛାଂଚର
ମାୟାବୀ ଈଶ୍ୱରଂକୁ ।।



# ଦୀପ ନିଭିଯାଏ

ଡେଣା ଛିଡ଼ିଗଲେ
ପକ୍ଷୀଟିଏ
ମା' ମରିଗଲେ
ଛୁଆଟିଏ
ଗୀତ ସରିଗଲେ
ସୁରଟିଏ
ବଂଚେ କେମିତି ?

ଯେମିତି ଢେଉ ଗଣାରେ
ରାତି ପାହେ ।
ଦିନ ଗଣାରେ ରାତି ହୁଏ ।
ଯେମିତି କହିବା କହିବା
କଥା କରିବା ଆଗରୁ
ଦୀପ ନିଭିଯାଏ,
ଦୀପ ନିଭିଯାଏ ।।



# ଚିହ୍ନାଜଣା

ଯେଉଁ ନେଂଗଡ଼ା ପିଲାଟି
ସେଦିନ
କିଛି କହିବା ଇଛାରେ
କରି ପାରିବାର ଭରସାଟିଏ
ସାଇତିଗଲା
ଜଉଘରର ଠଣାରେ,
ଉପାୟହୀନତାର
ଅକ୍ଷର ପୁଂଜରେ-
ତାହାଇଁ ଆଗକୁ
ପାଦ ବଢ଼ାଇବାର
ମୁହାଁଇ ଯିବାର ସର୍ତ !
ଯେଉଁ ତିନିଗୋଡ଼ିଆ ପିଲାଟି
ସେଦିନ
କିଛି ମାଗିବା ଇଛାରେ
କିଛି ଭାଂଗିବା ମତଲବରେ
ପଦୁଟିଏ କହିଲା ନାଇଁ
ତିଳେ ସହିଲା ନାଇଁ
ଚୁପ୍‌ଚାପ୍ କାଂଧେଇ ନେଲା
ନିସର୍ଗ ନିର୍ଯାତନା,
ଦୁର୍ଲଭ ସତ୍ୟଟି ପରି

ସହଣି ଲୋକାଚାରର ହାତକୁ
ଟେକି ଦେଲା ତେଜ ଓ ମରୁତ
କବିତାଟିଏ ଲେଖୁଥିବା
ପିତୁଳାଟିଏ ଗଢୁଥିବା
ଲୋକଟି
ତାକୁ ଚିହ୍ନିଚି, ଜାଣିଚି ।।



# ବିଚିତ୍ର

ଶବ୍ଦଠାରୁ
ଅର୍ଥର
ଅର୍ଥଠାରୁ ଶବ୍ଦର
ସାଧନଠାରୁ ସାଧ୍ୟର
ବିଦାୟଠାରୁ ଇଛାପତ୍ରର
ଯେତିକି ଦୂରତ୍ୱ
ମୋଠୁଁ ସେତିକି ସମୀପ
ତମର ନିର୍ଜନତା । ଅଥଚ
ପାହୁଲେ ପାଣିରେ
ଅଂତହୀନ ସମୁଦ୍ର,
ମୁଠାଏ ମାଟିରେ
ଅବସନ୍ନ ବର୍ଷା,
ଅନନ୍ୟ ସୁଯୋଗଟିର
ତର ତର ହିଂସା !

ନତୁବା ଅଲକ୍ଷ୍ୟରେ
ତରଳିଯାଂତା !
ହାକିମାତିର ବୋଧ ।
ଗଢ଼ି ହେଇଯାଂତା
'କିଛି ନୁହଁ, କିଛି ନୁହଁ'ର
ବିକଳ୍ପ ପ୍ରାସାଦ ।।



# ମହାନିଦ୍ରା

ଗଢ଼ି ପାରିବାର ଚେଷ୍ଟାରେ
ସଳଖ କଲି ଶ୍ୱାସକୁ, ଦାୟିତ୍ୱକୁ
ଯେ ମୋ ଅପଚେଷ୍ଟାର ଖେଳ
ମିଛିମିଛିକା ଧୂଳିଘର
କୋଳାହଳର ସୁଦଂର ଆସର
ଫୁଲଫଳେ ଭରପୂର
ଦୋହଦ ଧିକ୍କାର
ଅଝଟ ପିଲାଟି ପରି
ଡେଇଁ ପଡ଼ିଲା କୋଳକୁ ତମର ।

ନାନାମତେ ବୋଧ ଦେଇ
ମନେ ଅଛି
ପଦୁଟିଏ କହିଥିଲ
ଖଚମିଛ ଚୋରାବାଲି
ହସକାଂଦ ଫୁଲଝରି,
ଉଠ ଉଠ, ଯିବା ଚାଲ-
ବେଳ ତ ଆଖର !

ୟା'ପରେ କ'ଣ ହେଲା ?
ଜଣା ନାଇଁ । କେ ରଖିଲା
କାହାର ଖବର ! ଆଖି
ପିଛୁଡ଼ାକେ ଆଖି
ମୁଦି ଦେଲା ପଦ୍ମଫୁଲେ
ପାଗଳ ଭ୍ରମର ।।



# ଝଡ଼

ସବୁ ସତର୍କ, କାନକୁହା
କଥା ସତ୍ତ୍ୱେ, ସବୁ
ଦେହ କିଳା ମଂତ୍ର ଏବଂ କର୍ମସିଦ୍ଧ
ପ୍ରଶସ୍ତି ସତ୍ତ୍ୱେ ସେ
ଆସେ ଗୋଟେ ପିଂଜରା ଫିଟା
ବାଘର ଭୋକ ପରି ।
ଅଜ୍ଞାନ ବାଳୁତର
ଏକ ଜିଦିଆ ରାହା ପରି-
ଯେମିତିକି ଜ୍ଞାନ କହିଲେ
ବୁଝେ, ପୃଥିବୀଯାକ ପୃଥିବୀ ।
ଭୋଗ କହିଲେ ବୁଝେ ଜୀବନ
ଯାକ ଜୀବନ ।

ହଜାରେ ବାର ମନା କର ।
ସେ ମାନିବ ନାଇଁ କୌଣସି
ଅନୁଜ୍ଞା । କୌଣସି ଶାସନ ।
ଜାଣିଚି ସେ ନ ଆସିଲେ
କିଛି ମାନେ ରହିବ ନାଇଁ
ସତର୍କ ଚାତୁର୍ଯ୍ୟର ।
ମଂତ୍ରସିଦ୍ଧ ଯାତ୍ରାର, ସୁରୁଖୁରୁ
ଖୁସିବାସି, ବୋଝ
ଦାୟିତ୍ୱର ।।



# ଉତ୍ତର ପୁରୁଷ

ବାଟ ନ ଦିଶିଲା ବେଳେ
ବୁଢ଼ାର ହାତ
ଚାଲିଯାଏ ନାତି ଆଡ଼କୁ
ଆପେ ଆପେ । ଓ

ଡଂଟି ଶୁଖିଗଲାବେଳେ
କୋତରାଲଗା ବୁଢ଼ୀଟି
ଟେକି ଧରେ
କ୍ଷୀର ଶାମୁକାଏ ଯେ
ଭାଗବତର ଉଇଲଗା
ପୃଷ୍ଠା ଉପରେ
ମନକୁ ମନ, ଛାଁକୁ ଛାଁ
ଜଳି ପୋଡ଼ି ପାଉଁଶ ହେଇଯାଏ
ଧର୍ମ/ଅଧର୍ମ-ପାପ/ପୁଣ୍ୟ,
ଭଲ ମଂଦର ଅର୍ଥ/ଅନର୍ଥ ।
କେବଳ ଯା' ବକଟେ
ନାତିର ହାତ ମୁଠାରେ
ଦାଂତ ରଗଡ଼ଉଥାଏ
ବଧିଆ ଭବିଷ୍ୟତ ।



# ସାର୍ବଜନୀନ

ସମୟକୁ ଦୁଃସମୟ
ଗିଳିଲା ପରି
ବେଂଗକୁ ସାପ
ଢୋକିଲା ପରି
ଦୁଃଖକୁ ଈଶ୍ୱର
ଗଢ଼ିଲା ପରି
ମୁଁ ଭାଂଗୁଚି 'ମୁଁ' କୁ ।

ମଢ଼କୁ ମୂଢ଼
ସଂଭାବନାକୁ ତର୍କ
ଶୋଷକୁ ଭୋକ
ଛକିଲା ପରି
ବୀରକୁ ଭୀରୁତା
ନାରୀକୁ ରୂପ
ଦାରୀକୁ ଲଜ୍ଜା
ଆଚାରକୁ ଧର୍ମ
ଶିକ୍ଷାକୁ ମୂର୍ଖତା
ଜଗିଚି,
ଯେମିତି ମୁଁ
ଆପଣାପଣରେ ଗଢୁଚି
'ମୁଁ'କୁ,
ସରିଯିବାର ଭରସାରେ
ଦାନା ବାଂଧୁଚି
ଛାଁକୁ ।।



# ଏକକ

ମୁଁ ମୋ ଭଳି
ହବାକୁ
ଚାହିଁଲି ଯେ ତୁମେ
ତୁମ ଭେଳିକି ଭିତରେ
ତୁମ ଭଳି ହେଇ
ରହିଗଲ । ମୁଁ
ତୁମ ଭଳି ହବାକୁ
ଛୋଟିଆ ଇଚ୍ଛାଟିଏ
ଗୋଡ଼ିଭଳି
କାଳିଂଦୀକୁ ଫିଂଗି ଦେଲି
ଯେ ତୁମ ଲୁଚାଛପା
ଦିଗ୍‌ବଳୟ ତଳୁ
ତିର୍ଯ୍ୟକ୍ ହସିଦେଲ !
ଦୁହେଁ ଦୁହିଂକଠାରୁ
ନାହିଁ ନୋହିଲାଠାରୁ
ଓହରି ଆସିଲେ ଯେ
ସବୁ ନାହିଁ ନାହିଁର ମୁହଁରେ
ହଁଟିଏ ହେଇଗଲେ ।
କଠଉ ଚିହ୍ନଟିଏ ପରି
କାଳର ମଥାରେ
ଝଟକିଲେ ॥



# ହରିବୋଲ

ଭୋଜିଭାତରେ
ପଂଗତରେ
ତୁଚ୍ଛା ହସର
ଅଂଧାରିବିଜେରେ
ଉତ୍ସୁକ ଆବେଗଟି ପରି
ସାଇତା ଥାଏ
ଯେତେ ପୁଣ୍ୟ ଓ ପବିତ୍ରତା
ଆଡ଼ଂବର ଓ ଫୂର୍ତ୍ତି,
ଦ୍ୱନ୍ଦକୁ ନିକଟେଇ ନବାଓ
ଉଦାର ହାହାକାର,
ପ୍ରତିବିଂବର
ଉଦାସୀ ଖରାବେଳ-
ସବୁକୁ ସାଇତିବା ଆଳରେ
ତଥ୍ୱ ନବା ଲୋକଟି
ଯେବେ ଢୁଳେଇ ଯାଏ
ଘଂଟା କଂଟାର
ଏକାଗ୍ର ଆତଂକରେ-
ହଠାତ୍ ଚିହିଁକି ପଡ଼େ
ଟୋପାଏ ଲୁହର ନିର୍ଜନତା,

ମୁଠାଏ ଭାଗ୍ୟର ବିପର୍ଯ୍ୟୟ
'ହରିବୋଲ'-'ହରିବୋଲ'
ଶବ୍ଦର
ଧନ୍ୟବାଦ ଦବା ପ୍ରସଂଗ
ବହିର୍ଭୂତ
ଗୁଡ଼ାଏ ଅର୍ବାଚୀନତା ।।



# ସୀମାନ୍ତ

ମୁଁ ବୁଡ଼ି ମରୁଥିଲାବେଳେ
ବଡ଼ିମାର ପଂକରେ
ତୁମେ
କୁଆଡ଼େ ଥିଲ ଯେ

କହୁଚ ଡାକିଲ ନାଇଁ !
ଆଉ କିଛି
ବାଢ଼ି ଦେଇଥାଂତି
ଗଢ଼ି ଦେଇଥାଂତି
ଅଣବାହୁଡ଼ା ଦିନର
ଖେଳଣା,
ଅଣଲେଉଟା ସୁଖର
ସରପଣା !

ଖରା ଖାଉଥିଲାବେଳେ
କୂଳରେ
କେଉଁଠି ଥାଅ ଯେ କହୁଚ
ଡାକିଲ ନାଇଁ !
ଆଉ କିଛି
ଟାଣି ଦେଇଥାଂତି
ସଂଭାରି ନେଇଥାଂତି
ବୁଦିବୁଦିକିଆ
ଜଂଗଲର ଝରଣା,
କଳା ଘୁମ
ମେଘର ଓଢ଼ଣା !!



# ଶେଷ ଇଚ୍ଛା

ରୋଗ ଶେଯରେ
ଶୋଇ ଶୋଇ ଛାତର
କଡ଼ି ବର୍ଗା ଗଣୁଥିଲାବେଳେ
ଆକାଶର ତରା ପରି
ଅନେକ ମିଠା କଥା, ଓ
ସାଂତ୍ୱନାର ଧାରୁଆ ଛୁରୀରେ
ଅବଶିଷ୍ଟ ଆୟୁକୁ
ପକେଇ ଦେଇ
ଯେ ଯୁଆଡ଼େ
ଯେଝା ରାସ୍ତାରେ ଉଭାନ୍ !

କେଇ ପାଖରେ ବସି
ମଥାରୁ ଛିଡ଼ାଏ ନାଇଁ
ଅଧା ପାଚଲା ବାଳ, ବା
ବିଂଧୁଥିବା ଆଂଠୁଗଂଠିକୁ
ଆଉଁଶେ ନାଇଁ
ସରାଗରେ ବା ଦିକ୍‌ଦାରରେ ।
ଏତିକିବେଳେ ବିଚାରୀ
ନର୍ସଟି ଦେବୀ ପ୍ରତିମା ପରି
ନହନହଂକା ହସରେ ଆସେ, ଓ
ପଦୁଟିଏ ପଚାରେ  ଭଲ ଲାଗୁଚି ?

ତା' ଧୈନାଖଡ଼ିକା ଭଳି
ରେକାଏ ହାଡ଼କୁ
ପିଂପୁଡ଼ିଟିଏ କାମୁଡ଼ିଦେଲା ପରି
ମୁଁ କହି ପକାଏ ସିସ୍ଟର,
ସମୟ ହେଇଗଲା ।।



# ଅଭିନ୍ନ

ମୋ ନାଁ ପରି ଈଶ୍ୱରଂକ
ନାଁ । ସେ ଛୋଟ ବଡ଼
ସୃଷ୍ଟିର ବିଂବରେ
ଖୋଜଂତି ନିଜକୁ । ସୃଷ୍ଟିଶୀଳ
ମନ ନେଇ ମୁଁ ମଧ୍ୟ
ଭେଟୁଥାଏ ତାଂକ ପରି
କେବେ କେବେ ମୋ ଆତ୍ମାର
ପବିତ୍ର ସତ୍ତାକୁ ।

ସେ ସବୁ ଉର୍ଦ୍ଧ୍ୱେ ରହି
ଆର୍ତ୍ତ ସ୍ୱରେ ବୁଡ଼ି ଯାଂତି
ଆପଣା ଭିତରେ । ମୁଁ ବି ଠିକ୍
ତାଂକ ପରି
ଆତ୍ମସ୍ଥ ଆତ୍ମସ୍ଥ ଭାବ,
ଛୋଟ ବଡ଼ ଭୁଲ୍ ଚୁକ୍
ଭଲମଂଦ, ଘଟଣ ଓ ଅଘଟଣ
ଟହଲି ଭିତରେ !

ସେ ଯେମିତି ବୁଝିସୁଝି
ଚୁପ୍‌ଚାପ୍, ଏକା ଏକା
ଆତ୍ମଭୁଲା, ଜଟାଜୁଟ
ମୃତ୍ୟୁର ସୋଦର-ମୁଁ ଠିକ୍

ସେଇପରି ଅଧାଜଳା ମୁର୍ଦାରର
ଗଂଧ ଭର୍ତି ମଶାଣିର
ଏକ ଜଗୁଆଳ । ଏପରିକି
ତାହାଠାରୁ ଢେର୍ ବେଶି
ସ୍ନେହଶୀଳ, ଭାବରେ ବିଭୂତିମୟ-
ଥପ୍ ଥପ୍ ଗଳୁଥିବା
ବର୍ଷା ପାଣି, ଦୂବରେ କାକର ॥



# ଦୁଃଖ-ସୁଖ

ସମୁଦ୍ର ସହ
ବାସକରୁଥିବା ଲୋକଟି
ଏବେ ଜାଣୁଚି
ନଈ ମଝିରେ
ଘର କରିବା ମାନେ
ପଡ଼ିଶା ଭଳି ପାଖେ ପାଖେ
ମାଛ, ଜାଲ, ଓ କିଂଭୀର ।

ମାଛ ତେଲରେ ମାଛ
ଭାଜିବା, ନାଆ ବାହିବା
ଖରାତରାରେ ଭିଜି ବୁଡ଼ି
ଫସଲ ଗୋଟେଇବା ସଉକ
ଥିଲେ ଥାଉ କୂଳର,
ମୋଟାବୁଦ୍ଧିଆ, ନିପଟ
ସଂସାରୀର ! ଜାମୁଗଛର
ପେଂଥା ପେଂଥା କୋଳି
ପାରିଲାପଣ-କୋରଡ଼ର !
ଲୋକଟି ଏବେ ଜାଣୁଚି
ନଈ, ସମୁଦ୍ର, ବର୍ଷା ଓ ବିରହ
ମେଂଢା ବାଳ ଜଡ଼ା ତେଲ ପରି

ତା' ଇଚ୍ଛା ଅନିଚ୍ଛାର
ରୁଅ ବାଉଁଶରେ ଗଢ଼ା
ଘନ ଘୋର ବର୍ଷାର ଛପର

ଯାହା ତା' ଅଧା ଚଖା ସୁଖର
ଦୁରୁଦୁରୁ ଦୁଃଖର
ଭାଷାଂତର । ଉତ୍ତର ବୟସର ।।



# ନିଭୃତ

କେଇ କୁଆଡ଼େ
ନ ଥିଲା ବେଳେ
ଦମକାଏ ବର୍ଷା
ଫସଲ କିଆରିରେ
ଦୁମୁ ଦୁମୁ ହୁମୁ ହୁମୁ
ମାଡ଼ିଗଲା ଭଳି
ମୁଁ ନିଜ ଭିତରେ ଭିତରେ
ବଂଶୀଟିଏ ହେଇ
ବାଜୁଥାଏ ! ଖୁଡ୍ କିନା
କଉଁଠୁ ଟିକେ
ଆଓ୍ବାଜ ହେଲା ତ
ଆଉ ସୁର୍ ନ ଥାଏ,
କି ଲୟ ନ ଥାଏ !
ଯେମିତି ହିଡ଼ ଭାଂଗି
ଏଣେ ତେଣେ
ବହିଯାଉଥିବା
ବର୍ଷା ପାଣି !!



# ଚୁପ୍‌ଚାପ୍

ଚୁପ୍‌ଚାପ୍
ଧଳା ଚଦର ଖଂଡେ
ଘୋଡ଼ି ହେଇ
ଶୀତ ଦିନ୍ନେ
ନିଦକରେ
ଶୋଇ ପଡ଼ିଥିବା
ଜରୁଆ ଲୋକଟି ପରି
ଆକାଶ ।
ଯେମିତି ଗାଁ ମୁଂଡ
ଛୋଟ ନଈଟିର
ପାଖେ ପାଖେ
ସୋରିଷ କ୍ଷେତର ଶେଯକୁ
ଆଢ଼େଇ ଦେଇ
କଉଁ ଆଇମା ଅମଳରୁ
ବାତ ଜ୍ୱରରେ
ବିଂଧା ଛିଟିକାରେ
ଏକ କାନିଆ, ଏକ ଘରିଆ
ସବୁ ଧନ, ଦଉଲତ-
ଗହଳ ଚହଳର
ଅମାପ ସଂତୋଷ !!



# ଠାର

ହାତରେ ହାତ ରଖି
କାଂଧରେ କାଂଧ ମିଳାଇ
ସଂଧି ସୂତ୍ରେ
କଥା କଥାକେ
ବଦଳିଯାଏ ମଣିଷ !
ବଦଳିଯାଏ ବୋଲି
ନାହିରେ ତେଲ ଦେଇ
କଥାରେ ନଥା ଯୋଖି
ନିଦ ବାଉଳାରେ
ଖସି ପଳାଏ ବୟସ !

ଯେମିତି ଏଇ
କେତୁଟା ଦିଂନ ଭିତରେ
ଖତୁଆ ମାଟିରେ
ପୋତି ଦେଇଥିବା ଚାରାଟି
ଫୁଲ କଷିରେ
ଭାଂଗି ପଡୁଥିବାବେଳେ
ହଳଦିଆ
ପତ୍ରଂକ ଭିଡ଼ରେ
ଏଂଡୁଅ ଭଳି
ମଥା ଟୁଂଗାରେ
ବାର୍ଧକ୍ୟ ॥



# ବାମପଂଥୀ

ବାଁ ପାଖକୁ
ଆଉଜି ପଡ଼ିଥିବା
ରାସ୍ତାର
ନିୟମ ପରି
ଡାହାଣେ ଡାହାଣେ
ଭୋଗ, ବିଳାସ
ଅଯନ୍ତ ! କଦବା

କେବେ କେମିତି
ଆଖିପତା ପରି
ଚହଲି ଗଲ ତ
କଦଳୀ ପତ୍ର ପରି
ଦୋହଲି ଗଲ ତ
ଦଳ ବଂଧା
ଫୁସୁଲା ଫୁସୁଲିରେ
ଆଇନ୍ କାନୁନ୍,
ଶାସନ ପ୍ରଶାସନ
ଏକଦମ୍ ମସ୍ତ !



# ଭୋଗ

ନିଆଁକୁ ଯେମିତି
ପବନ
ଆସକ୍ତିର ଚରାରେ
ସେମିତି ଗୃହୀ,
ଯେମିତି
ଦେହକୁ ରୋଗ,
ଫଳକୁ
ଲୋଭ ।।



# ଫୁଃ ଫା

ଫୁଃ କରିଦେଲି ଯେ
ପଂଝାକୁ ପଂଝା
ଦଳକୁ ଦଳ
ପରଲଗା ଉଇ
ଛୁଟି ଆସିଲେ
ହୁଂକା ଭିତରୁ, ମଗଜ
ସଂଦିରୁ । ଯେମିତି
ଫେଁ କିନା ହସିଦେଲେ
ଗୋଟିକୁ ଗୋଟି
ଅଧାକୁ ଅଧା
ଅଣାୟତ୍ତ ଇଚ୍ଛା
ଖସି ପଳାଂତି
ସଜଡ଼ା ସଜଡ଼ି
ପେଡ଼ି ପୁଟୁଳାରୁ,
ଗୁଣିଆପଣର
ଜଡ଼ିବୁଟିରୁ ।।



# ଫେରାର

ଜିଦ୍ ନ ଥିବା ଲୋକଟି
ଯେମିତି ପାଂଚ ପଦରେ ପଦେ
କହୁ କହୁ
ବଂନ୍ଦୀ ହେଇଯାଏ
ନୀତି ନିୟମର ମୁଠାରେ,
ପଦେ କିଛି କହିବାର ଔଚିତ୍ୟକୁ
ଫିଂଗି ଦଉଥାଏ
ଖୋଲା ଦରବାରର ଅରାଜକତାରେ,
କୁଂଠିତ ପ୍ରତିବାଦରେ-
ସେମିତି କେଇ କାହାରି ଜିଦ୍‌କୁ
ଅଂଟା ସୂତା ପରି
ଛିଡ଼ାଇ ଦବା ଆଗରୁ
ବିନା ଜିଦ୍‌ରେ/ଜିଦ୍‌ଖୋର-
ସହାବସ୍ଥାନରେ
ପୃଥ୍ଵୀ ଗୋଟା ଚୂର,
ପଦେ କଥାରେ ଚୁପ୍ !
ଯେମିତି ପାଂଚ ପଦରେ
ପଚିଶି ଲୋକ
ଠେଂଗା ବାଡ଼ିରେ ଫେରାର୍ ।
ନିଜ ନିଜ ଜିଦ୍‌ରେ
ସର୍ବାଧିକାର, ଈଶ୍ୱରେଶ୍ୱର ।।



# ଶିଷ୍ଟାଚାର

ଧାଡ଼ିଏ
ଭଲ ଲେଖା ପାଇଁ
ଯେମିତି ସାବାସ୍,
ନୀରବ ପ୍ରତିକ୍ରିୟା, ଓ
ନିବିଡ଼ ଦୀର୍ଘଶ୍ୱାସ-
ସେମିତି
ସମୟ ଓ ବକ୍ତୃତାର
ସ୍ୱେଚ୍ଛାଚାରରେ
ସଭା ମଂଚ,
ସଭାସୀନ ଭଦ୍ରମଂଡଳୀ !

ଅଥଚ ଉଭୟ ଉଭୟଂକୁ
ବୁଝିପାରୁଥିବା
ପ୍ରତିଦ୍ୱଂଦ୍ୱିତାରେ
ତାରିଫ୍ କରିବା
ସଭାର ବିଶେଷତ୍ୱ,
ଆୟୋଜନର ଶିଷ୍ଟତା !!



# ସବୁବେଳେ ହସହସ

ଲୋକଟା ଜାଣି ନ ଥିଲା
ସବୁବେଳେ ହସିବା
ଗୋଟେ ମାରାତ୍ମକ ଅଭ୍ୟାସ,
ଅପରାଧ ବୋଲି । ଯେମିତି
ଆମେ ଜାଣୁ
ହଜାରେ କାମ ଧନ୍ଦାରେ
ଦୁନିଆ ଝମେଲା ଓ ଝଂଜଟରେ
ଟିକେ ହସି ଦବାଇଁ ବଡ଼
ଫୁର୍ତ୍ତି, ନିଛକ ସ୍ନେହଶୀଳତା-
ମଣିଷର ଏକମାତ୍ର
ସଂପଦ ବୋଲି ।

ଲୋକଟା ଜାଣି ନ ଥିଲା
ସବୁବେଳେ ହସିବା
ଗୋଟେ ନିରୁତା ମଣିଷର
ବିନୀତ ଓ ପବିତ୍ର
ଟଂ ଟଂ ଅହଂକାର ବୋଲି ।
ଯେମିତି ଆମେ ଜାଣୁ :
ଚୁପ୍ ରହିବାଠୁଁ
ନିଜ ଜ୍ଞାନ ଗରିମାର
ଉଦ୍ଭଟ ପରିଚୟ
ଏକ ବିଶେଷ ଧରଣର

ସଫଳତା

ଇହଲୋକର ଚମକ
ଅଛି ବୋଲି, ଅଛି ବୋଲି ।

ଲୋକଟା ଜାଣି ନ ଥିଲା
ସବୁବେଳେ ହସିବା
ଗୋଟେ ଛଦ୍ମବେଶୀ ଗୁପ୍ତଚରର
ଉଦାର ଷଡ଼ଯଂତ୍ର ବୋଲି ।
ଯେମିତି ତମେ ଆମେ
ଅଳ୍ପ ବହୁତେ ଜାଣୁ
ଯଉଁଠି ଯେତିକି
କହିବା କଥା, ହସିବା କଥା
ତା'ଠୁଁ ଚେନାଏ କି ଚିରୁଳାଏ
ଅଧିକା ହେଲେ
ନିଜେ ନିଜଠୁଁ ଛିଟ୍‌କି ଯାଉ ବୋଲି !

ଲୋକଟା ଜାଣି ନ ଥିଲା
ସବୁବେଳେ ହସିବା
ଗୋଟେ ବେହେଡ଼ା ଯାଦୁକରର
ପ୍ରସ୍ତ ପ୍ରସ୍ତ ରହସ୍ୟର
ହୁତୁହୁତୁ ଉଲ୍ଲାସ ବୋଲି ।
ଯେମିତି ଆମେ ସଭିଏଁ
ଏବେ ଜାଣୁଚୁ
ହସହସ ମୁହଁର ଗାମ୍ଭୀର୍ଯ୍ୟ
ସମୟର ସ୍ୱାଭାବିକ, ଅବୁଝା
ଅର୍ଥ ବୋଲି ।।



# ପ୍ରୌଢ଼ି

ତମ ଗାଉଁଲି ହସର
କୋଳ ଭିତରେ
ମୁହଁ ଦେଖେଇ
ଲୁଚି ଯାଏ
ଦୁଆରିବେଶା ଦର୍ଶକ,
ଯେମିତି ତମ ନାଁ ଭିତରେ
ମୁହଁ ଲୁଚେଇ
ହସି ପକାଏ
ଦୂରଦେଶୀ ଆଗଂତୁକ ।
ସେମିତି ହଁ ଓ ନାଁର ଅର୍ଗଳିରେ
ମୁଁ
ଛକିଥାଏ ତମକୁ
ଯୋଖିବାକୁ
ହାଣମୁହେଁ
ବିବେକର ଟେକ ॥



# ନିରାପତ୍ତା

ଗୁଳି ଫୁଟିବା ମାତ୍ରେଇ
ଚଢ଼େଇଗୁଡ଼ା
ନିଜ ନିଜ ବସାରେ ।
ଯେମିତି ଶବ୍ଦଟିକୁ
ଠୁଁକିଲେ
ନୀରବତାରେ କବିତା,
ଗୋଟେ ତାଳି ମାଡ଼ରେ
ଛିନ୍ନତର
ରଣଝଣ
ହୃଦ୍ୟତା ॥



# ଗୂଢ଼

ନାହିଁ ମୁଂଡରେ
କୁଆ ଥଂଟ ପରି
ଶବ୍ଦର ପେଟରେ
ତୀକ୍ଷ୍ଣତା । ଯେମିତି
ଏକକ ପଣକିଆରେ
ସରଳ କ୍ରୂରତା ।।



# ଦୋ ଫସଲ

ପ୍ରଲୋଭିତ
ସତ୍ୟର
ନାଲଝଂଡା ଉଡୁଥିବା
ସଂରକ୍ଷିତ
ଇଲାକା ଟପିଲେ
ବହୁରଂଗୀ ନକ୍ଷତ୍ରଂକ
ଶୋଭା-ଅଭିଷେକ !
ଝାପ୍‌ସା
ଅଂଧାର ହିଡ଼
ଡେଇଁଗଲେ ଦିଶିଯାଏ
ଦୋଫସଲି
ମାଟିର ଛାତିରେ
ଲୋଚାକୋଚା
ବୁଦ୍ଧିର ପଣତ !!



# କାଲିପୁଣି

କାଲିପୁଣି
ଅସ୍ତବ୍ୟସ୍ତ ପବନ
ଅତର ଭଳି ଉଡ଼ିଯିବ
ଦୀର୍ଘଶ୍ୱାସର ଦରଜକୁ ।
ଖୁସିବାସିର ଦିନଗୁଡ଼ାକ
ପିଲାଂକ ଖେଳନା ପରି
ଟିହାଉଥିବ ସ୍ମୃତିକୁ !

ଯେତେ ଭୁଲ୍‌ଭଟ୍‌କା
ଲୋଭନୀୟତାର କଂଦଳ
ଚଲାଖ ଗୋଇଂଦା ପରି
ଅନୁଶୋଚନା
ବାଟ କଢ଼ାଇ ନବ
ଧାରୁଆ ହସର ମତଲବୀ
ସଂତୋଷକୁ । ସବୁ
ଚଂଚକତା ସଜାଡ଼ି ନବ
କ୍ଷିପ୍ତ ବିକ୍ଷିପ୍ତ ଭିତିରି
ଘୁମରର ଅଂଦରମହଲକୁ ।
ଅସ୍ତବ୍ୟସ୍ତ ପବନ
ଯେମିତି ଅତର ଭଳି
ପିଇଯାଏ
ଦୀର୍ଘଶ୍ୱାସର ଦରଜକୁ ॥



# ନିଜସ୍ୱ

ମୁଁ ଆଉ ମୋର ହେଇ
ନାହିଁ । ଏହାହିଁ
ଗୋଟେ ଅମୃତ ବେଳାର
ନିଟୋଳ ସାଂତ୍ୱନା ।
ହସ କାଂଦର ପ୍ରତିସ୍ପର୍ଧୀ ଡାକକୁ
ଡେଇଁ ଯିବାର ନିଭୃତ
ଆଚରଣ । ମୁଁ ଏବେ
ମୋର ହେଇ ନ ପାରିବାର
ନିଶ୍ଚୁପତାର ଡାଲାରେ
ସୋରିଷକ୍ଷେତର
ଶୋଭାବନ

ଯାହା ମୋ ପାରଦର୍ଶିତାର
ଶାରଦୀୟ ସଂଙ୍ଗରେ
ସଂପାଡକାର ନିଅାଁ ହୁଲାରେ
ନିକଟତମ ଗୀତର/ପ୍ରାଣଛୁଆଁ
ବିଶ୍ୱସ୍ତ ମଂଡନ ।।



# କୁବେର

ସହୃଦୟତାର
ଗୁଂଜ ଫଳକୁ
ଅଂଗୀକାରର ଗଳାରେ
ମଂଡାଅ ନା ।

ଅଣଲେଉଟା
ହଳଦୀବସଂତର ସକାଳ
ଫି କିନା ହସିଦେବ ଶୁଣିଲେ !

ସାତ ପରସ୍ତ ଦାମୀ ଛିଟରେ
ସୁନା ସିଂଦୁକର
କାଠ ଫରୁଆରେ
ସଂପାଦି ଥାଅ ଯତ୍ନରେ

ଯେମିତି କଉଡ଼ି କଡ଼େ ପାଇଲେ
ଦୁଃଖୀଟିଏ । ଅସରାଏ
ବର୍ଷା ପାଇଲେ
ଚାଷୀଟିଏ । ପ୍ରଥମ
ସୂର୍ଯ୍ୟୋଦୟ ଦେଖିଲେ
ପ୍ରେମିକାଟିଏ ॥



# ସର୍ତ୍ତ

ସର୍ତ୍ତ ଥିଲା  ଯେବେ ମୋ
ଆଭରଣହୀନ ସୌଂଦର୍ଯ୍ୟ
ଦେଖିବ
ତମେ ମୋର ହେଇ
ରହିବ ନାଇଁ । ମୁଁ
ତମର ହେଇ ରହିବି
ଚିରକାଳ ।

ଆଜି ନିସର୍ତ୍ତତାରେ
ଆଭରଣହୀନ ଗୋପ୍ୟତାରେ
ବଂଦୀ
ସମୟ ଭଳି ମୁଁ । ଅଥଚ

ସବୁ ଥର ଥର ସମର୍ପଣରେ
ଝୁଂଟି ପଡୁଚି
ସର୍ତ୍ତମୟ କ୍ଷମଣୀୟତା, ଓ
ଦୀର୍ଘଶ୍ୱାସଟେ ପରି
ଈର୍ଷାପରତାରେ
ଉଭୟଂକ ସ୍ୱେଚ୍ଛାଚାରିତା ।।



# ପାଦେ ଆଗକୁ

ଆଗକୁ ପାଦଟିଏ
ବଢ଼ାଇଚ ତ
ଅନ୍ୟ ପାଦରେ
ପିଂପୁଡ଼ିର ରୁଟ୍ ! ପାଦ
ପରେ ପାଦ ଡେଇଁ ଡେଇଁ
ଅଟକିଗଲ ତ
ଦି'ପାଦ ଭୂଇଁ ପାଇଁ
ପାଦ ବୋଲି କିଛି ନାଇଁ ।

ଅତଏବ ଅନବରତ
ପାଦବଢ଼ାରେ, ଭୂଇଁ ଖୋଜାରେ
ପିଂପୁଡ଼ିଟିକୁ ସାଥୀ କର ।
ଯେମିତି ତମ ସହ
ବାଡ଼ି ଧରିଥିବା ଲୋକେ
ବୁଝିବେ ପିଂପୁଡ଼ିଟାକୁ ବି
ତମେ
ଯୋଗ୍ୟ ନୁହଁ ।।



# ଡାକଟିଏ

ମୁଠାଏ ମାଟି
ଭିତରେ
ପାଣି ପବନ ଆଲୋକ ପରି
ତମ 'ଓ' ଭିତରେ
ଲୋଭନୀୟତାର
ବୈଦୁର୍ଯ୍ୟ, ବୀଜଟିର
ଆର୍ତ୍ତସ୍ୱର । ଯେମିତି
ମୋ ଡାକରେ
ଅବହେଳାର ଉପଚାର,
ସେବାଯନ୍ତ୍ର
ଆଡ଼ମ୍ବର ॥



# ତିନିକୁ ତିନିଏ

ଝାଳନାଳ ହେଇ
ଦୌଡ଼ୁଥିବା
ଅଣଶ୍ୱାସୀ ନଈ ପରି
ସମୟ । ଦି' ଧାର
ନିଗିଡ଼ି ଆସୁଥିବା
ଲୁହ ପୋଛି
ଖୁଂଟ ଭଳି ଚାଲୁଥିବା
କାଣିଚାଏ ନୂସରେ ମଣିଷ ।
ସମୟ ଯେମିତି
ଥରଥର ଅସ୍ଥିର
ନଈ ସେମିତି ତରତର
ଉଦ୍‌ବେଳ ! ଓ ସବୁ
ତରତରିଆ ସ୍ଥିରତାରେ
ଧୀର ସୁସ୍ଥ ମଣିଷ ।
ଅଧୀର ଅସ୍ଥିରତାରେ
ଢୋକ ଗିଳୁଥାଏ
ଆୟୁଷ ।।



# ଆଶ୍ୱାସନା

କହୁଚ
ଥକି ପଡୁଚ ତ !
ଦମ୍ ନିଅ । ଚାଲ ।
ଏଇ ରାସ୍ତାରେ । ଜଂଗଲ
ଆଡ଼କୁ ଯଉଁଟା
ସିଧା ମୁହାଁଇଚି ।
ଖୁସିରେ
ପହଁଚିଯିବ ଠିକଣାବେଳେ ।
ହାତ ଧରିଥିବାଯାଏ
ଚିଂତା କ'ଣ ?
ଆଖି ନଥିବା ଲୋକଟି
ଆଉ କ'ଣ କରଂତା ?
ହାତଟିଏ
ଧରିବା ଛଡ଼ା ! ହେଲେ,
ହାତ ବଢ଼ାଇଦେଲା ବେଳକୁ
କହୁଚ  ରୁହ, ମୁଁ ଦେଖେ,
ହାତ ଦି'ଟା କ'ଣ
ନ ଥିଲା ଭଳି ଲାଗୁଚି ॥



# ଭାଗ୍ୟ

ହାତ ଧରାଧରି ହେଇ
ଚାଲୁଥିବା
ଦୁଇ ଜଣରୁ ଜଣେ
ଗହଳି ଭିତରେ
ହାତ ଛାଡ଼ିଦେଲା ତ
ଆର ଜଣକ
ଏକୁ ତାକୁ
ପଚରା ଉଚରାରେ
ଏକା ଏକା ନିଖୋଜ ।
ଯେମିତି ଯାଆଁଳା ଭାଇରୁ
ଜଣେ
ଆର ଜଣକୁ ଦେଖିଲେ
ନିଜ ଖୋଜାରେ
ବଡ଼ ବ୍ୟସ୍ତ ।।



# ସଂଜ ହେଲେ

ଆକାଶର କାଂଥିକୁ
ସଂଜ ଛୁଇଁ ଆସିଲାବେଳକୁ
ଜଳି ଯାଉଥିବା ସଳିତାଟିଏ
ଚଉଁରା ମୂଳେ ମୋରି ଗୀତ ବୋଲେ ।
ନୀଡ଼ ଫେରା ଶେଷ ଚଢ଼େଇଟି
ବଡ଼ କଦରରେ ସେ ସୁରକୁ
ଚୋରେଇ ନେଇ
ବସା ଭିତରେ ପଶିଯାଏ !
ଘୋଟି ଆସୁଥିବା ପତଳା
ଅଂଧାର ଭିତରେ
ନିଜ ସହ କଥା ହବା ଆଳରେ
ଧୂପଟିଏ ଜାଳି ଦେଇ
ବାହାରି ପଡ଼େ ନିଜ ଭିତରୁ !

ଏତେବେଳେ କେଇ ଯଦି
କଅଁଳେଇ ସଅଳେଇ
ଡାକି ଦିଏ-
କିଛି ଶୁଣି ନ ଶୁଣିଲା ଭଳି
ନିଘୋଡ଼ ନୀରବତାକୁ
ଦି'ଭାଗ କରି
ତା'ରି ଭିତରେ ଛପିଯାଏ,

ଯେମିତି ସୀତାଂକ
ପାତାଳ ଗମନ ଦୃଶ୍ୟରେ
ରାଜା ରାମଚଂଦ୍ରଂକ ଭିତରୁ
ବାହାରି ଆସିଥିଲେ
ପ୍ରଭୁ ରାମଚଂଦ୍ର ॥



## ସ୍ୱାଭାବିକ

ବଗିଚାରେ, କ୍ଷେତ ବାରିରେ
ଯେମିତି ମନକୁ ମନ
ଘାସ, ହସହସ
ମୁହଁରେ/ଆଂଟପଣର ଆଖିରେ
ସେମିତି ମପାଚୁପା
କଥାର ସଂଦେହ !

ଯତ୍ନଶୀଳ ମାଳୀଟି
ଚାଷ ବାଉଳା ଚାଷୀଟି
କ୍ଷେତକୁ/ଫସଲର
ଉଭା ଶୋଭାକୁ ଦେଖି
ଭାବିବା ସଂଗତ ଯେ

ବିନା ଘାସରେ
ବିନା ଦୋଦୋପାଂଚରେ
ମଣିଷଗୁଡ଼ା ସୁଂଦର,
ନୁଆଁଣିଆ ମେଘଭର୍ତି
ଆକାଶ ପରି
ଏକକୁ ଆରେକ
ଅଜବ, ଗଂଭୀର ॥



# ଗଛ କଟାଳି ପ୍ରସଂଗ

ଅଚିହ୍ନା ଲୋକଟିଏ
ହାତ ବଢ଼ାଇଲେ
କୋଳ ପିଲାଟି ଯେମିତି
ଭେଁ କିନା କାଂଦରେ
ଭିଡ଼ି ଧରେ ମା'ର ଛାତିକୁ-
ଠକ୍ ଠକ୍ ଶବ୍‌ଦରେ
ଭୂଇଁ ଦୁଲୁକିଲାବେଳେ
ପତ୍ରଝଡ଼ା ଗଛର ଚେରସବୁ
ସବୁ ଯାକ ଶକ୍ତି ଖଟେଇ
ଜାବୁଡ଼ି ଧରିଲେ ମାଟିକୁ, ସେମିତି ।

ଏ ଦୃଶ୍ୟରେ ବିଚରା
ଗଛ କଟାଳିର
କ'ଣ ହେଲା କେଜାଣି !
ହାତରୁ ଖସିପଡ଼ିଲା
ବେଂଟ ହୁଗୁଳା କୁରାଢ଼ି, ଓ
ପିଲାଦିନଠୁଁ
ଆଦର ଯନ୍‌ରେ ବଢ଼ିଥିବା
ଛାତି ତଳର ଅମରୀ ଲଟାଟି
ତା' ଗୋଟିକିଆ ଶ୍ୱାସର
ଆଉଁଶାରେ
ଝାଉଁଳିଗଲା ସେଇଠି ।

ଏବେ ଠକ୍ ଠକ୍ ଶବ୍ଦଟିଏ
ଭାସି ଆସିଲେ କେଉଁଠୁ
କୋଳପିଲାଂକୁ ଅତର୍କରେ
ଜାକି ଧରଂତି ମା'ମାନେ ।
ଓ ମାଟି ଭିତରକୁ ଭିତରକୁ ଭିତରକୁ
ଚେରେଇଯାଏ ଗଛର ଚେର ସବୁ ॥

# ଅଂତରଂଗ

ଯଂତରେ ପାଣି ବୋହୁଥିବା
କ୍ଷତ ଓ କ୍ଷେତକୁ
ଗୋଟିପଣେ ଆବୋରି ବସିଥିବା
ଗୋଡ଼େ ଗୋଡ଼େ ଜଗିଥିବା
ଚାଷୀଟି ପାଇଁ
ଯେମିତି ଖଂଡଖଂଡ ହେଇ
ବିଛୁଡ଼ି ପଡ଼ିଥିବା
ସ୍ୱାଭିମାନର ପୃଥିବୀ, ସେମିତି
ଓଳିଏ ଖାଇ, ଦି'ଓଳି
ଗୋଟା ଗୋଟା ଉପାସରେ
ସୂର୍ଯ୍ୟକୁ ପାଣି ଟେକୁଥିବା
ଲୋକର ଆଳସ୍ୟ, ସରଳତା
ଓ ଈଶ୍ୱର ! ଯେମିତି ସବୁ
ପରଂପରା ଓ ବୁନିଆଦିର
ମଝି ଘଳିଆ ଦେଇ
ହିଡ଼ ତଳେ ତଳେ ବହିଯାଉଥିବା
ପାଣି ପରି ଧର୍ମକୁ ଆଖିଠାର ।
ଦୁନିଆକୁ, ଭୁଲାମନକୁ
ଧୂଆଁ ଧାରିଆ
ଅନୁରାଗର ଝର ॥



# ସୁଯୋଗ

ପୋତା ହୋଇଥିବା
ଚୋରା ଧନ ପରି
ଆୟୁଷ । ସଂଚିତ
ପରାଭବ ପରି ବ୍ୟସ୍ତତା ।
ଶ୍ୱାସପ୍ରଶ୍ୱାସର
ଅସ୍ଥିର ଗତିଶୀଳତା ପରି
ସାଂସାରିକତାର ସଂତୋଷ ।
ଓ ଗୋଟାଏ ଆକସ୍ମିକତାର/
ସୁଯୋଗର ଖନ୍‌ତିରେ
ଉନ୍‌ମୁକ୍ତ
ଦୀର୍ଘଶ୍ୱାସର ଅଭ୍ୟଂତର

ଯାହାକୁ କେହି କେହି
କହଂତି
ସଫଳ-ବ୍ୟର୍ଥତା, ଓ ଆଉ କେହି
ବ୍ୟର୍ଥ-ସଫଳତା ।।



# ଅସ୍ତିବାଚକ

ବେପରୁଆ ଖାତିର୍‌ରେ
ଅପରିଣାମଦର୍ଶୀ
ଶବ୍ଦ-ଖେଳର ଜରାୟୁରେ
ପୋତି ଦଉଚ
ଯଉଁ ଭାବ ବୀଜକୁ, ସମଦର୍ଶୀ
ସମାକୁଳ ସଂବେଗକୁ-
ପାରୁଚ ଯଦି ସେତକ
ତୋଳି ଧର ନିରାଭରଣ
ଶତ୍ରୁତାର ପାପୁଲିରେ,
ମିତ୍ରତାର ତୀକ୍ଷ୍ଣ ଛୁରୀ ଦାଢ଼ରେ-
ଯେମିତି ସବୁ କୁଂଠା ଓ ସଂଶୟ
ଚହଲିଯିବ ଭୁରେ,
ସାମାନ୍ୟତମ ହସର
ନୀରବ ହୁଁରେ ॥



# ଆବୃତ

ଆଖିରେ ଆଖି ମିଶିଲେ
ଗଢ଼ା ହୁଏ
ଦୁଃଖର ମୂର୍ତ୍ତି ।
ଶ୍ୱାସକୁ ପ୍ରଶ୍ୱାସରେ
ଯୋଡ଼ିଲେ
ନିଃସଂଗ ବିହ୍ୱଳତା !
ହାତରେ ହାତ
ଛଂଦିଲେ
ସ୍ଥାନ-କାଳ-ପାତ୍ରର ସଂଜ୍ଞା
ଭୁଲିଯାଏ
ଅପହଂଚ ଦୂରତ୍ୱ ! ତେଣୁ
ପାଦ ତଳେ ଥିବା
ମାଟି ଟେଳାଏରେ
ଗଢ଼ି ନିଅ,
ଘୋଡ଼େଇ ରଖ-
ପାଣି ଫୋଟକାର
ସ୍ୱର୍ଗ ।
ଅଂତରଂଗତାର
ନର୍କ ।।

●

ପ୍ରାଦେ ଅ.ଟକୁ

# ପରାଜୟ

ରାଗ ଜରଜର
ଫଣଫଣିଆ ଶବ୍ଦଟିଏ
ଫିଂଗି ଦେଲାରୁ
ମୌନତାର ହାତକୁ-
ଈଶ୍ୱରଂକ ଜଟାରୁ
ଖସି ପଡ଼ିଥିବା ଚଂପା ଫୁଲଟି ପରି
ତମେ ଗୋଟେଇ ନେଲ
ସେଇଟିକୁ, ଓ କାମ ଆଳରେ
ଲହଡ଼ିକୁ ଦି'ଭାଗ କଲା ପରି
ଚାହାଣିଟିଏ
ଚାଲିଗଲ କୁଆଡ଼େ ଯେ
ଦେଖିଲାବେଳକୁ
ମୁଁ
ତମ ହାତରେ
ଦୀପଟିଏ ହେଇ ଜଳୁଚି ।।



# ତର୍କ

ବସ୍ତୁ ନେଇ
ଯେମିତି
ସ୍ୱାଧୀନ ଅସ୍ତିତ୍ୱ
ଜିହ୍ୱାର
ଧର୍ମ ନେଇ
ସେମିତି
ଦେହ ବଂଦୀ
ମଣିଷ ।
ପରିଚ୍ଛନ୍ନତାରେ
ଭାବ ।
ପରିବେଶର ଭିନ୍ନତା

ଯେମିତି
କଥା କଥାକେ ତର୍କ,
ମୂଲ୍ୟବୋଧର
ହେର୍‌ଫେର୍ !



# ଧୂର୍ତ୍ତ

ଏ ପାଖକୁ ସେ ପାଖ
ଏ କୂଳକୁ ସେ କୂଳ
ଏ ଥାନକୁ ସେ ଥାନ
କରୁଥିବା ଲୋକେ
ବୁଝଂତି
ପାଖାପାଖି ହବାର ଅର୍ଥ
ନିକଟତମ ସତ୍ତାର ବୈରତା-
ନିଜଠୁଁ ନିଜେ
ଅପ୍ରତିଭତାରେ
ବିଚ୍ଛୁଡ଼ି ଯିବା । ଯେଉଁଥିପାଇଁ
ଅନ୍ୟର ଅନନ୍ୟତାକୁ
ଗହୀରେଇ ଦେଖିବା
ଢଂଗ
ଏତେ କଳାତ୍ମକ,
ନିଜ ଅପେକ୍ଷା !



# ପରିଭାଷା

ନୀରବତାର
ଗୋଟେ
ସ୍ୱତଂତ୍ର ପରିଭାଷା
ଅଛି । ଯେମିତି
କୋଳାହଳର, ଯାନିଯାତ୍ରାର
ଥାଟରେ
ମୌନତାର ଈର୍ଷା ।
ନିଜ ସହ ଦୁଷ୍ଟ
ସମୟକୁ
ଯୋଖି ପାରିବାର
ଉନ୍ମୁଖ ସରଳତା ।।



# ଆକ୍ରୋଶ

ମୁହଁ ପରି ମୁହଁଟିଏ
ଦେଖିଲେ
ମୁଁ ବାଟ ହୁଡ଼ିଯାଏ ।
ତରାଂକୁ ପଚାରେ
ରାତିର ଠିକଣା ।
ମେଘକୁ ପଚାରେ
କେଉଁଠି ?
ଦୂର ପାହାଡ଼ର ମଥାନ ।
ନଡ଼ିଆଗଛର ବାହୁରେ
ଦୋଳୁଥିବା
ସୂର୍ଯାସ୍ତକୁ ପଚାରେ
ଯୋଡ଼େ ଆଖିର ଆକ୍ରୋଶ ଭଳି
ମୁହଁଟିଏ ଯଦି ଦେଖିଚ
ତେବେ
ଜଲ୍‌ଦି କହି ପକାଅ
ତା' ନାଁ କ'ଣ ସ୍ମୃତି ?
ନା ଅନ୍ୟମନସ୍କ
ଖିଆଲ !!



# ଆତ୍ମୀୟ

ଦିନେ ସ୍ୱନାମଧନ୍ୟ ଈଶ୍ୱରଙ୍କ
କୋଥଳିରୁ
ଅସାବଧାନତାରେ
ଖସି ପଡ଼ିଥିବା ଭଂଗା ଆର୍ଶିକୁ
ଦେଖୁ ଦେଖୁ
ଠଉରାଇ ନେଲି ମୋ ଅଜଣା
ଅଚିହ୍ନା ଶତ୍ରୁର ଚେହେରା

ଯେ ନାନା ଗୁଜବ ଓ ଲୋକାପବାଦର
ଡେଉଁରିଆ ଭିତରେ
ପ୍ରତିରକ୍ଷାର ଓଷଦ ଭଳି
ସବୁ କଥାରେ
ଗୁଁ ପୁଁ ହଉଥିଲା ତାଚ୍ଛଲ୍ୟରେ,
କାରଣହୀନ ଉଦାସୀନତାରେ-
ଯେମିତି କି ମୋଠାରୁ ବଳି
ତା'ର ଆଉ କେଇ ନାହିଁ
ଦାଉ ସାଧିବାର ଏକମାତ୍ର
ଆତ୍ମୀୟ ।।



# କଥାଭାଷା

ପାହାଂତି ଆକାଶରେ
କୁଆଁତରା ଉଇଁଲେ
ମଲ୍ଲୀଫୁଲଟି
କହେ   ମୋ କଥାଟି ସରିଲା ।
ଏବେ ତମ କଥା କୁହ ।।

ପଶ୍ଚିମରେ ସୂର୍ଯ୍ୟ
ବୁଡ଼ିଲେ
ନୀଡ଼ ଫେରା
କ୍ଳାଂତ ପକ୍ଷୀଟି
କହେ   ଆଉ ଦୁଃଖ କ'ଣ ?
ମେଘ ଉହାଡ଼ରେ
ଦ୍ୱିତୀୟା ଜହ୍ନ ।।

●

# କବିତାର ଲଗ୍ନ

ଅସୁମାରି
ସ୍ନେହ-ସଂପଦ, ଓ ଡରୁଆ
ସତର୍କତାର ମଂତ୍ରଣାରେ
ମିଂଜି ମିଂଜି ଜଳୁଥିବା
ଲଂଠନଟିକୁ ଯଉଁଦିନ
କବିଟିଏ
ନିଭାଇ ଦବାକୁ
କଲମ ଭଳି ହାତଟିଏ
ବଢ଼ାଇ ଦେଲା-
ବୋଧେ ସେଇଦିନ
ଆଧୁନିକତାର ମଢ଼ କାଂଧେଇ
ସବୁ ଜହ୍ନରାତିର
ମଥାମଣି ପରି
ଶ୍ରୀରାଧାଂକ କଦଂବ ଫୁଲିଆ
ଛାତି ତଳେ ସିଟି ବଜେଇ
ସକାଳର ରେଳଗାଡ଼ିରୁ
ତନୁପାତଳୀ ଶ୍ୟାମଳୀ ଝିଅଟିଏ
ଧାରେ କଜ୍ଜଳମଖା

ପାଦେ ଆଗକୁ

ସରୁ ହସଖିଏ ପରି
ଗ୍ରୀଷ୍ମ ସଂଧ୍ୟାର ଦୃଶ୍ୟ କୋଳକୁ
ଗଦ ଗଦେଇ
କୁଦି ପଡ଼ିଲା । କବିତାଟିଏ
ଜନ୍ମ ନେଲା ।।

('ଲଂଠନ' ଓ 'ଜହ୍ନରାତି'ର କବି ରମାକାଂତ ରଥ ଏବଂ 'ରେଳଗାଡ଼ିରେ ସକାଳ' ଓ'ଗ୍ରୀଷ୍ମ ସଂଧ୍ୟାର ଦୃଶ୍ୟ'ର କବି ସୀତାକାଂତ ମହାପାତ୍ରଂକୁ ନିବେଦିତ)



# ଧର୍ମ

ଗଡ୍ଡାଳିକାର
ଝରାରେ
ଓଦା ସରସର
ଲୁଗା ଖଂଡେ ଉଡୁଚି !
ତାକୁ ଚଉତା ଚଉତି କରି
ରଖିଦିଅ ବାକ୍ସରେ ।
ପଂଚଗ୍ରହ କୂଟ ବେଳକୁ
ଖୋଲିବ, ପିଂଧିବ ।।



# ଅଟକବନ୍ଦୀ

ଅଠାକାଠିରେ
ଲଟକି ଯାଇଥିବା
ଦକ୍ଷିଣା ପବନ ପରି
ଆଖିପତାରେ
ବୁନ୍ଦାଏ ଲୁହ   ଯେ
ଟୁପ୍ କିନା ଟଳି ପଡ଼ିବା
ଅନେକ ଆଗରୁ
ମନେ ପକେଇ ଦିଏ
ଦିନେ
କାଉଁରିଆ କାଠି ପରି
ବେହିସାବୀ ବସନ୍ତଟେ
ଫକୀର ବେଶରେ ଏଠାକୁ
ଏମିତି ଆସିଥିଲା । ଓ
ଏତକ
ତା' ଗଲାବେଳର,
ରାଜପଣର ଐଶ୍ୱର୍ଯ୍ୟ,
ଭୋଗାଭୋଗର ଉଚ୍ଛିଷ୍ଟ ।।



# କବିତାର ପୃଥିବୀ

ଜାଣ  ଝୁରି ହବାଠୁଁ
ବାଉଳି ହବା ଯାଏ
କବିତାର ପରିଧି,
ଶବ୍ଦକୁ ଶବ୍ଦ ଚିହାଉଥିବା
ଲଢ଼େଇପଣରେ
ସବୁ ଅକ୍ଷର, ରେରେକାରର
ନୀରବତା  ଯେ ମାଟି ତଳ
ଦୂବ କେନାରେ, ଗଛ ଡାଳର
ଏକାକୀ ଚଢ଼େଇ ଅଂଟରେ,
ନଇଁ ପଡୁଥିବା ମେଘର
ଫଳଂତି ଉଶ୍ୱାସରେ,
ଧୂଆଁ ଧାରିଆ ପାହାଡ଼ୀ
ଝରଣାର ଚମ ତଳେ ତଳେ,
ଖେଦି ଯାଉଥିବା ବିଶ୍ୱାସର
ନାହୁଡ଼ରେ ଝୁଲି ରହିଥାଏ
ବୁଂଦାଏ କାକର ପରି ।
ବିଂଦୁ ବିଂଦୁ ହେଇ
ବିଛୁଡ଼ି ପଡ଼ିଥିବା ଉତ୍‌ଫୁଲ୍ଲତାର
ଝଲକେ ଉଦାସ ପରି । ଜାଣ

ଝୁରି ହବାଠୁଁ ଅଂଡାଳି ହବାଯାଏ
ରାସ୍ତା ସାରା ଝୁମି ଯିବାର,
ଝକ୍‌ମାରିର

କବିତାର ପୃଥିବୀ  ଶବ୍ଦ ସହ
ନିଜର, ନିଜ ସହ
ଝୁଂକ କଢ଼ା ସରଳତାର
ମୁହାଁମୁହିଁ ହବାର ଦୃଶ୍ୟ,
ସବୁ ଭୁଲ୍‌ଭଟ୍‌କା
ଅନୁଭବ ଓ ପରାଭବର
ପ୍ରଥମ ଗର୍ଭପାତ ଓ ଅଂତିମ
ଦିଗ୍‌ବିଜୟ ।।



# ଲେଖକର ବିଶ୍ୱାସ

[କିଛି ବର୍ଷ ତଳେ 'ଉଚିତ-ଅନୁଚିତ' ଶୀର୍ଷକ କବିତାଟିଏ ଲେଖିଥିଲି । ଏଇଟି ବୋଧେ 'ନବରବି'ର କୌଣସି ସଂଖ୍ୟାରେ ପ୍ରକାଶ ପାଇଥିଲା ଓ ପରେ 'ଚିତା ଅଂକା କାଂଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ' (୧୯୮୭) ରେ ସଂକଳିତ ହେଇଚି । ଏ ବହିଟିର ରିଭ୍ୟୁ 'ସମାବେଶ' (୩୦ଶ ବର୍ଷ-୩୩୮ ସଂଖ୍ୟା-୧୯୮୮) ପୃଷ୍ଠାରେ ପ୍ରଫେସର ଶ୍ରୀ ସତ୍ୟନାରାୟଣ ମହାଂତି ଲେଖିଛଂତି । ଆଲୋଚନା ପ୍ରସଂଗରେ ଆପଣ ଯଉଁ ବିଷୟଟିକୁ ବିତର୍କ ପାଇଁ ରଖିଛଂତି, ସେଇ କଥା ଶ୍ରୀ ମହାଂତି 'ଉଚିତ-ଅନୁଚିତ'କୁ ଭିତ୍ତି କରି ଠାଏ କହିଛଂତି-''କବି ବା ଲେଖକ ବେଳେବେଳେ ଉଚିତ-ଅନୁଚିତ ଦ୍ୱନ୍ଦ୍ୱରେ ପଡ଼ି ଯାହା ସେ ଭାବୁଚି ତା' ନ ଲେଖି ଯା' ଭାବିବା ଉଚିତ ସେଇଆ ଲେଖେ ।'' ''କବି ବା ସାହିତ୍ୟିକ ଯାହା ବିଶ୍ୱାସ କରେ ତାହାଇଁ ଲେଖେ, ନା ପାଠକମାନେ ଯାହା ବିଶ୍ୱାସ କରିବା ଉଚିତ ତାହାଇଁ ଲେଖେ'' ପ୍ରସଂଗଟି ପ୍ରାୟ ଏକା ଭଳି ।]

ପ୍ରଥମେ ଏ ବିତର୍କର ଶୀର୍ଷକରୁ ଦୁଇଟି ପ୍ରଧାନ କଥା ଦେଖିବା-ଗୋଟେ ହେଲା-ପାଠକୀୟ ବିଶ୍ୱାସ ଓ ଦ୍ୱିତୀୟଟି ଲେଖକୀୟ/ସାହିତ୍ୟିକ ବିଶ୍ୱାସ । ଏ ଦୁଇଟି କଥା ନେଇ ଆମର ଧାରଣା ସ୍ପଷ୍ଟ ହୋଇଗଲେ ତେଣିକି ଉଚିତ/ଅନୁଚିତ ବା ବିଶ୍ୱାସ/ଅବିଶ୍ୱାସ କଥା ଛାଏଁ ଛାଏଁ ବାରି ହେଇଯିବ ।

ସାହିତ୍ୟର ପାଠକ ଆମେ କାହାକୁ କହି ପାରିବା ? ଏମାନଂକର ସାମାଜିକ ସ୍ଥିତି କି ଭଳି ? ଏମାନେ କେବଳ ସାହିତ୍ୟ ପଢ଼ଂତି ନା ପଢ଼ାଂତି ? ସମୟର ଉପଯୋଗିତା ନେଇ ଏମାନେ ସାହିତ୍ୟ ପଢ଼ଂତି ନା ସାହିତ୍ୟ ପଢ଼ାକୁ ଏକ ସଂଭ୍ରାଂତ ବୁଦ୍ଧିଜୀବୀର ମର୍ଯାଦା ବୋଲି ଭାବଂତି ? ନା ବଳକା ସମୟ କାଟିବା ପାଇଁ ଏମାନେ ସାହିତ୍ୟ ପଢ଼ାକୁ ଏକ ଆମୋଦ ଦାୟକ ବିଳାସ ବୋଲି ଭାବଂତି ? ନା ଜୀବନର ନାନାବିଧ ବିଡ଼ଂବନାକୁ ଏଡ଼ାଇବା ଆଳରେ ସାହିତ୍ୟ ଭିତରୁ କିଛି ବଂଚିବାର ସ୍ୱାଦ ଖୋଜଂତି ? ନା ନିଜ

ଭିତରର ସୁପ୍ତ ଲେଖକୀୟତାକୁ ଉସ୍‌କେଇବା ସାଥିରେ କିଛି ଯଶ, ସମ୍ମାନ ଆଶାରେ ସାହିତ୍ୟ ପଢ଼ାକୁ ଏକ ପ୍ରବୃତ୍ତି ଅର୍ଥରେ ଗ୍ରହଣ କରଂତି ? ନା କିଛି ସୂକ୍ଷ୍ମ ରୁଚିବୋଧ ଓ ସୌଂଦର୍ଯ-ପ୍ରିୟତାର ଅନୁରୋଧରେ ସାହିତ୍ୟ ପଢ଼ଂତି ? ଏମିତି କେତେ ପ୍ରଶ୍ନ ପାଠକୀୟତାକୁ ନେଇ ଉଠିପାରେ । ତେବେ ସବୁ ସବୁ ଭିନ୍ନତା ଭିତରେ ଆମକୁ ମାନିବାକୁ ପଡ଼ିବ ଯେ ସାହିତ୍ୟ ପଢ଼ା ନିଶ୍ଚିତଭାବେ ଦୈନିକ ଖବରକାଗଜ ପଢ଼ିବା ନୁହଁ, ବା ଖେଳ-ସିନେମା, ଯାତ୍ରା-ତାମ୍‌ସା ଆଦିକୁ ନେଇ ହେଂଡି ମାରିବା ନୁହଁ । (ଯଦିଓ ଏସବୁର ଭୂମିକା ସାହିତ୍ୟ ପାଇଁ କିଛିଟା ରହିଚି) ବା ଏମିତି କିଛି ସମୟ ବ୍ୟୟ- ଅପବ୍ୟୟଜନିତ ଆଭିଜାତ୍ୟର ନମୁନା ନୁହଁ । ସାହିତ୍ୟ ପଢ଼ା ମୁଖ୍ୟତଃ ଜୀବନ ପ୍ରତି ଗଭୀର ରସବୋଧ ଓ ପ୍ରେମବୋଧରୁ ଜନ୍ମେ ଓ କ୍ରମଶଃ ସ୍ଥାନ-କାଳ-ପାତ୍ର ସଂପର୍କରୁ ପାକସିଦ୍ଧ ହେଇ ବ୍ୟାପକ ଅର୍ଥରେ ଗୋଟେ ଉତ୍ତମ ବିଚାର ଓ ଚେତନା ଗଢ଼ିବାରେ ସାହାଯ୍ୟ କରେ । ଏପରିକି ଜୀବନ ଭିତରେ ଛପି ରହି ସବୁ ଜୀଅଂତା ଅବବୋଧକୁ କୀଟଟିଏ ଭଳି ନଷ୍ଟ କରୁଥିବା ନାନା ବିରୋଧ, ବିଷମ, ବିଡ଼ଂବନା ବିରୁଦ୍ଧରେ ସାହିତ୍ୟପଢ଼ା, ସାହିତ୍ୟ ଚର୍ଚ୍ଚା ଓ ସାହିତ୍ୟସେବା ଲଢ଼େଇ କରି ଗୋଟେ ସ୍ୱଚ୍ଛ ଓ ଉଜ୍ଜ୍ୱଳ ମାନସିକତା ତିଆରି କରେ । ଭଲ ପାଠକ ମାତ୍ରକେ, ଜାଣିବେ, ଭଲ ଲେଖା ଓ ଲେଖକଂକର ଅଂତରଂଗତାର ରକ୍ଷାକବଚ । ପାଠକୀୟ ବିଶ୍ୱାସ ତାର ପ୍ରଥମ ସମ୍ମାନ ଓ ବିଶ୍ୱସ୍ତ, ନିଜସ୍ୱ, ମାର୍ଜିତ ରୁଚିବୋଧ ତା'ର ଦ୍ୱିତୀୟ ବିଚାର ।

ତା'ହେଲେ ଆମେ ପାଠକୀୟ ବିଶ୍ୱାସ କହିଲେ କ'ଣ ବୁଝିବା ? ସାହିତ୍ୟ ପଢ଼ିବା ଓ ସାହିତ୍ୟର ପ୍ରେମରେ ପଡ଼ିବା-ଜାଣିବେ, ଏକା କଥା ନୁହଁ । ସାହିତ୍ୟକୁ ଗୋଟିପଣେ ଭଲ ପାଉଥିବା ପାଠକ ମାତ୍ରେ, ମାନିବାକୁ ହବ, ଉଣାଧିକେ ସାହିତ୍ୟ-ଲେଖକ । ଯେମାନେ ପ୍ରକୃତରେ ଖାଲି ସାହିତ୍ୟ ପଢ଼ଂତି ନାଇଁ, ସାହିତ୍ୟ ସହିତ ନିଜେ ସବୁ ସବୁ ଦୃଷ୍ଟି ଓ ଅଭିବ୍ୟକ୍ତିରେ ସାମିଲ୍ ହେଇଥାଂତି । ରସଭୋକ୍ତା ଓ ରସସ୍ରଷ୍ଟାର ଦ୍ୱୈତ ମାନସିକତାକୁ ଗୋଟାଏ ଭାବସତ୍ତାରେ ରୂପାଂତର ସାଧନ କରି ପାଠକୀୟ ବିଶ୍ୱାସର ଅଧିକାରୀ ହୁଅଂତି । ନିଜ ନିଜ ଅନୁଭୂତି ଓ ଅଭିଜ୍ଞାନର ବେଢ଼ା ପରିକ୍ରମା

ଅବସରରେ ଯଉଁ ସ୍ୱକୀୟ ଜୀବନ-ବିଶ୍ୱାସ ଜନ୍ମିଥାଏ, ତାହାକୁ ସାହିତ୍ୟ ପାଠର ଉପଯୋଗିତା ଭିତରେ ଭେଟିଲେ ଏମାନେ ସାହିତ୍ୟ ଭିତରକୁ ନିର୍ବିବାଦରେ କୁଦି ପଡ଼ଂତି । ମୋ ମତରେ ଏଇଟାଇଁ ପାଠକୀୟ ବିଶ୍ୱାସ ଓ ଆମ ସାହିତ୍ୟରେ ଏ ବିଶ୍ୱାସ ନେଇ ଯେଉଁମାନେ କିଛି ପଢ଼ଂତି, ସେମାନେ ନିଜକୁ, ପରିବେଶକୁ, ଜୀବନକୁ-ଏପରିକି ନିଜ ନିଜର ଆଲୋକିତ ଓ ଅଂଧାରୁଆ ଜାଗାମାନଂକୁ-ସର୍ବୋପରି ବିଚରା ଲେଖକକୁ ଗୋଟେ ଗୋଟେ ବିଚ୍ଛିନ୍ନ ସତ୍ତା ଭାବେ ଦେଖଂତି ନାଇଁ, ବୁଝଂତି ନାଇଁ । ଏ ପାଠକୀୟ ବିଶ୍ୱାସର ପ୍ରଥମ ସର୍ତ୍ତ ହେଲା-ସାହିତ୍ୟ ପଢ଼ା ଭିତରେ ନିଜକୁ ଖୋଜିବା ଓ ନିଜ ଚେତନାର ସୂକ୍ଷ୍ମତଂତ୍ରୀରେ ଲେଖକୀୟତାର ଟେର୍ ପାଇବା ।

ଆଉ ଲେଖକୀୟ ବିଶ୍ୱାସ ! ଲେଖାଲେଖିର ପ୍ରଥମ ଓ ସର୍ବଶେଷ କଂଟ ହେଲା ତ ସର୍ତ୍ତହୀନତାରେ ପ୍ରକୃତି ଓ ଜୀବନର ପ୍ରେମରେ ପଡ଼ିବା । ତାର ନିତ୍ୟନୂତନ ରୂପ ବୈଚିତ୍ର୍ୟ ଓ ରହସ୍ୟରେ ଥିବା ଇସ୍‌ଥେଟିକ୍ ଆବେଦନ ପ୍ରତି ଭାବ-ସଂବେଗକୁ ଉନ୍ମୁଖ କରି ରଖିବା । ସବୁ ଅନିଶ୍ଚିତତା, ଅସଂଲଗ୍ନତା, ବ୍ୟର୍ଥତା ବା ନପାରିଲାପଣ ପାଇଁ ଶବ୍ଦଖେଳର ନୁଆଁଣିଆ ସଂଜର ଆକାଶ ଆଡ଼କୁ ଦୁଃଖସୁଖର, ବେଦନାବୋଧର, ଆପଣେଇନବାପଣର ନୈବେଦ୍ୟର ଦୀପଶିଖାଟିଏ ଟେକି ଧରିବା । ସଂବେଦନଶୀଳତାରେ ସ୍ପର୍ଶାତୁର ମନ ଓ ହୃଦୟକୁ ବଂତୁରାଇ ରଖିବା । ନିଜ ଅଂଗେନିଭା କଥାକୁ ସ୍ୱପ୍ନର ରଂଗ ଦେଇ, ପୁଟ ଦେଇ ଚହଟ ଚିକ୍କଣ କରି ବାସ୍ତବତାର ସମୀପବର୍ତ୍ତୀ କରିବା । ସବୁ ଭଂଗା, ଦଦରା, କାଂଦକାଂଦ ପଳାୟମାନ ମୁହୂର୍ତ୍ତଗୁଡ଼ିକର ହାତ ଗୋଡ଼ରେ ଖାଲି ଅକ୍ଷର ତ ନୁହଁ, ଅକ୍ଷର ଭିତରେ ଲୁଚିଥିବା ଅଣାକ୍ଷରର ଘୁଂଗୁର ବାଂଧି ଦବା । ବସ୍ତୁ ଓ ଘଟଣାର ଅଂତରାଳରେ ଛପିଥିବା 'ଆରଦୃଶ୍ୟ'ର ପ୍ରତିମାଟିଏ ଗଢ଼ି ଘଡ଼ିଏ ମେଘୁଆ ଆକାଶକୁ, ନିମିଷେ ନିଜ ଭିତରକୁ ଚାହିଁ ଆଖିରୁ ଦି'ଟୋପା ଲୁହ ଢାଳି ଦବା । ଏହାଇଁ ତ ସାହିତ୍ୟ ଲେଖା, ସାହିତ୍ୟସେବା, ସାହିତ୍ୟଚର୍ଚ୍ଚାର ଚେର ! ସେ ଲୁହ ଦି'ବୁଂଦା ମାଟିକୁ ଛୁଇଁବା. ଆଗରୁ ଯେ ନିଜ ଆଖିକୁ ଲୁହ ଜରଜର କରିଦିଏ ସେ ତ ସାହିତ୍ୟସେବାର ବିଶ୍ୱାସ ସବୁକୁ ଛାତିତଳେ ଠୁଳେଇ ସବୁ ସବୁ ସାମାଜିକ, ପାରିବେଶିକ

ଅର୍ଥହୀନତା ବିରୁଦ୍ଧରେ ଲଢ଼େଇ କରିବାକୁ ଡାକରା ଦେଇଥାଏ ! ଭଲ ସାହିତ୍ୟ କହଂତୁ ବା ସାହିତ୍ୟିକ-ବିଶ୍ୱାସ କହଂତୁ-ମୋ ମତରେ ସେ ଭୁଲ୍‌ରେ କେବେ କେମିତି ସତ୍ୟ ସହିତ, ନିଜ ସହିତ, ନିଜ ଚେତନା ଓ ବିଚାରବୋଧ ସହିତ ଲୁଚକାଳି ଖେଳରେ ମାତେ ନାହିଁ । ଯଦିଓ ଶବ୍‌ଦଖେଳ ଜରିଆରେ ସେ ଏଭଳି ଅବବୋଧର ଶୀର୍ଷକୁ ଯିବା ପାଇଁ ଅନେକ ନୀରବତାର ଯଂତ୍ରଣା ଓ ସାଧନାକୁ ସାଥୀ ରୂପେ ବାଛି ନେଇଥାଏ । ଲେଖକୀୟତା ତେଣୁ ନିଜର, ନିଜ ସମୟର କୁଂଠାହୀନ ଉଦ୍‌ବୋଧନ । ନିଜ ଆତ୍ମିକ ବିଶ୍ୱାସର ସବୁଠୁ ବେଶି ସତ୍ୟଶୀଳ ଉଚ୍ଚାରଣ ।।

ଜାଣିବେ-ଲେଖକର ବିଶ୍ୱାସ ତା' ଶ୍ୱାସପ୍ରଶ୍ୱାସ ଭଳି । ପ୍ରତିନିୟତ ଯେ ଖାସ୍ ଜୀବନକୁ ଖୋଜେ, ମୃତ୍ୟୁର ଶବ କାଂଧେଇ ବାଟ ଚାଲେ । ପୁଣି ତା' ବିରୁଦ୍ଧରେ ଲଢ଼େ । ସବୁ ମଂଦକୁ ମଂଦର ପର୍ବତ ଭଳି ମୁଂଡେଇ ସବୁ ସବୁ ଭଲକୁ ଭଲପାଏ-ଏମିତି ନୁହଁ । ଜୀବନ-ମୃତ୍ୟୁ, ଭଲ-ମଂଦ, ହାନି-ଲାଭ, ଛଂଦାଛଂଦି ଚଂଦ୍ରାଲୋକର ଛାୟାଚ୍ଛନ୍ନତା ଭିତରେ ଧାଡ଼ିଏ ପ୍ରାଣଛୁଆଁ ଗୀତ ବୋଲି ଦବାକୁ ମୁଁ ତ ଲେଖକୀୟ ବିଶ୍ୱାସ ବୋଲି ବୁଝେ । ଛାତି ଭିତରୁ ଦୁହିଁ ହେଇ ଆସିଥିବା ଭାବଟିଏ, ସୁର୍‌ଟିଏ ଭିତରେ ତେଣୁ ଥାଏ ଯେତିକି ନମନୀୟତା, ଥାଏ ତା'ଠୁଁ ବେଶି ନିଜ ଅନୁଭବ ପ୍ରତି ଅନୁରକ୍ତି, ଭୟଶୂନ୍ୟ ଦୃଢ଼ତା, ଅକପଟ ସ୍ୱଚ୍ଛ ମନ ଓ ହୃଦୟର ସ୍ନିଗ୍ଧ ଆତ୍ମୀୟତାବୋଧର ନିବେଦନ । ଯଉଁ ଲେଖକର ବସ୍ତୁ ଓ ଘଟଣାମାନଂକ ପ୍ରତି ଯେତେ ଅଧିକ ପ୍ରତିକ୍ରିୟା, ତା' ଲେଖାରେ ସେତେ ଏଇଭଳି ବିଶ୍ୱାସର ବିଶ୍ୱସ୍ତ ଶବ୍‌ଦଖେଳ ଓ ଏଇ ଖେଳରେ ମାତିଥିବାଯାଏ ଲେଖକଟି ଜୀବନକୁ ମହକେଇ ଦବାର ସଂଭାବନାରେ କି ସାଂଘାତିକ ଭାବେ ଡହକୁ ଥାଏ ପ୍ରତିନିୟତ, ଚିରାୟତ ! ଏଇ ହେତୁ ପ୍ରତି ଲିତାବିଲିତାରେ, ଭଲ ପାଠକଟିର ସତ୍ୟ-ସଂଧାନୀ ଭାବ-ବୃତ୍ତି, ସୌଂଦର୍ଯ୍ୟ-ବୃତ୍ତି ଓ ରସବୃତ୍ତି ପାଇଁ ବିଶ୍ୱସ୍ତତାରେ ଟାକି ରହିଥାଏ ବିଚରା ଲେଖକଟି !! କାଳେ ଚିହ୍ନରା ଗ୍ରାହକଟି ହୋ-ହୋ ଘୋ-ଘୋର ବିଶ୍ୱାସହୀନତା କବଳରେ ପଡ଼ିଯିବ, ଝୁଂଟି ପଡ଼ିବ, ବାଟ ହୁଡ଼ିଯିବ !!

ତେଣୁ ଲେଖକ ପାଇଁ ଯା' ବିଶ୍ୱାସ୍ୟ ତା' ପାଠକଟି ପାଇଁ ଅବିଶ୍ୱାସ୍ୟ ହେଇପାରେ । ବା ପାଠକଟି ପାଇଁ ଯା' ସତ, ଲେଖକଟି ପାଇଁ ତା' ସାହିତ୍ୟେ ପରିସରଭୁକ୍ତ ହେଇ ନପାରେ । ଏ ମିଛ ସତ, ବିଶ୍ୱାସ୍ୟ ଓ ଅବିଶ୍ୱାସ୍ୟର ଘୋଡ଼ଦୌଡ଼ ଭିତରେ ଖାଲି ତମେ ଆମେ କାଇଁକି, ସାରା ସଂସାରଟା ତ ମାତିଚି କଉଁ ଅରମା ଅମଳରୁ । ସାଂସାରିକତା ତ ଏୟା ! ହେଲେ କବି ବା ଲେଖକ କ'ଣ ସଂସାରରୁ ବାହାର ? ମିଛସତର ହାତସଫେଇ ଦେଖା ଯାଦୁକରର ମାୟାଠାରୁ କ'ଣ ସେ ବହୁ ଦୂରରେ ? ନା ସେ ବି ମିଛସତର ଯୋଡ଼େଇକରା ଭଂଗା ହାତଗୋଡ଼କୁ ନେଇ ତମ ଆମ ଭଳି ହେଂଡି ମାରଂତି । ସାହିତ୍ୟ ଚଷଂତି । ଚିତ୍ର ଆକଂନ୍ତି । ଗୀତ ବୋଲନ୍ତି । ସୁର୍ ଧରନ୍ତି । ମାତନ୍ତି, ତାତନ୍ତି, ନାଚନ୍ତି, ହସନ୍ତି, କାନ୍ଦନ୍ତି । ସବୁ ସବୁ ଭିତରେ କିଂତୁ ନିଜକୁ ଭେଟନ୍ତି-ସାଧାରଣତାରେ ଲଟେଇ ପେଟେଇ ନ ହେଇ ଚେତନାକୁ, ସୌନ୍ଦର୍ଯବୋଧକୁ, ଆପଣାର ଲେଖକୀୟ ଢ଼ମକୁ ପରଖ କରନ୍ତି ।

ଯେତେବେଳେ ଲେଖକଟି ବାହାରକୁ ତମ ଆମ ଭଳି ହସେ ବା କାନ୍ଦେ, ବଂଚେ ବା ଜୀଏ-ସେତେବେଳେ ତ ସେ ପାଠକର ବିଶ୍ୱାସ ପାଖେପାଖେ ଚାଲୁଥାଏ । ଯେବେ ତା' ହସକାନ୍ଦର, ମାନଅଭିମାନର, ରାଗରୋଷର, ଭଲ ପାଇବା ବା ଘୃଣା କରିବାର, ଦ୍ରୋହ ବା ପ୍ରତିବାଦର ଭିତିରି ରଣଝଣ ସହ ପାଠକଟି ଚୁପ୍‌ଚାପ୍ ଏକାତ୍ମ ହେଇଯାଏ, ସେତେବେଳେ ତ ଲେଖକର ବିଶ୍ୱାସ ଓ ପାଠକର ବିଶ୍ୱାସ ବୋଲି କିଛି ଅଲଗା ଅଲଗା ସ୍ୱତନ୍ତ୍ର ଭାବସତ୍ତା ନ ଥାଏ । ନିଜ ଅନୁଭବ, ଉପଲବ୍ଧି ଓ ରସବୋଧର ଅପୂର୍ବ ସାମଞ୍ଜସ୍ୟ ଦେଖି ଲେଖାଟି ଉପରକୁ ଦୀର୍ଘଶ୍ୱାସଟିଏ ଫୋପାଡ଼ି ଦେଇ ପାଠକଟି ଛାଁକୁ ଛାଁ କହି ପକାଏ-ବାଃ, କ'ଣ ହେଇଚି, ? କ'ଣ ଲେଖିଚି ? ଏଇ ବିସ୍ମୟବୋଧକୁ ଭେଟିଯିବା ଅର୍ଥ ଲେଖକୀୟ ବିଶ୍ୱାସ ଓ ପାଠକୀୟ ସାର୍ଥକତା ବୋଲି ମୁଁ କହିବି ।

ମୋ ଜୀବନର ସୀମିତ ସମୟ ସୀମା ଭିତରେ ବା ଲେଖକୀୟ ସୀମାସରହଦରେ ଥାଇ ଯେତକ ବୁଝିଚି-ଲେଖକ, ଜଣେ ସଚ୍ଚା ଲେଖକ

ପାଇଁ ନିଜ ଅଂଗେ ନିଭା କଥାର ନିଷ୍କପଟ ଉଚ୍ଚାରଣଇଁ ତା' ଗଭୀର ବିଶ୍ୱାସବୋଧର ହେତୁ । କାହା ମନକୁ ପାଇବା ନ ପାଇବା ନେଇ ସେ ବେଶି ଘାରି ହୁଏ ନାଇଁ, କି ବେଶିଗୁଡ଼ାଏ ଧାରଉଧାର ବହିପଢ଼ା ଜ୍ଞାନକୁ ପୁଞ୍ଜି କରି ଏଣେତେଣେ ଧନ୍ଦି ହୁଏ ନାଇଁ । କଉଁ ପାଠକ ଏହାକୁ ପଢ଼ି ନାକ ଟେକିବ, ବା ଗାଳି ବର୍ଷିବ-ବା ସମାଜ-ଧର୍ମ-ନୀତି-ନିୟମ ସବୁ ନାଲି ଆଖି ଦେଖେଇବେ, ଏସବୁକୁ ନେଇ ମଥା ଖେଳାଏ ନାଇଁ ବେଶି ଗୁଡ଼େ । ଖୁବ୍ ଆତ୍ମିକ ନିବିଷ୍ଟତୀ ନ ଆସିଲେ, ପ୍ରୀତି ଓ ପ୍ରତୀତିରେ ନିବିଡ଼ତା ନିରଂଧ୍ର ନ ହେଲେ ବା ସଂପୂର୍ଣ୍ଣ ସାହିତ୍ୟ-ସମର୍ପିତ ବ୍ୟକ୍ତିତ୍ୱଟିଏ ଗଢ଼ିବା ଇଚ୍ଛାରେ ନିଷ୍ଠା ଓ ଆଂତରିକତା ନ ଥିଲେ ଏମିତି କେବେ କହି ହୁଏ ନାଇଁ ବା ଲେଖି ହୁଏ ନାଇଁ । ସାହିତ୍ୟ ପଢ଼ିବାବେଳେ ବା ସାହିତ୍ୟକୁ ଜୀବନର ରସଦ ଭାବେ ବୁଝିଲାବେଳେ ଆମ ମାନସିକତାକୁ ଯଦି ଦେହମନ ସୁଦ୍ଧା ସାମାଜିକତାଠାରେ ବଂଧା ପକାଇ ଦେଇଥାଉଁ, ତେବେ ମୋ ଜାଣିବାରେ କିଛି ସାହିତ୍ୟ ଲେଖି ହବ ସିନା, ଲେଖକୀୟ ବିଶ୍ୱାସ ନିଜଠାରେ ବା ପାଠକଠାରେ ଜନ୍ମାଇ ନୂଆ ସୃଷ୍ଟିଶୀଳ ମନ ଓ ରସ ଜଗତର ପରିଚୟ ଦେଇ ପାରିବା ନାଇଁ । ଏଇହେତୁ, ପାଠକ କ'ଣ ଭାବୁଚି ବା ବିଶ୍ୱାସ କରୁଚି, ସେସବୁ ନେଇ ମୁଁ ଭାବିତ ହେଇ ନାଇଁ । ନିଜେ ଯା' ଉଚିତ ମଣିଚି, ବୁଝିଚି ଓ ଅନୁଭବିଚି-ସତ୍ ସତ୍ ସତ୍ ବିଶ୍ୱାସକୁ ଲେଖିଚି, ଲେଖିବା ପାଇଁ ଯତ୍ନଶୀଳତା ପ୍ରକାଶ କରିଚି । କଉଁଠି ହାରିଚି, କଉଁଠି ଜିତିଚି-ତାର ବିଚାର ଓ ବିଚାର କରିବାର ଅଧିକାର ମୁଁ ଟେକି ଦେଇଚି ପାଠକୀୟ ବିଶ୍ୱାସ ହାତରେ । ସେ ତେଣିକି ମୋ ବିଶ୍ୱାସର ହାତ ଧରି ପାରିଲା ତ ଖଲାସ୍ ହେଇଗଲି, ଜାଣିବେ- ଆତ୍ମସଂତୋଷରୁ, ଛାଡ଼ି ଦେଲା ତ ସେ ବିଶ୍ୱାସର ହାତ, ମଣିବେ-ପାଇଗଲି ଭରଣ ଭରଣ ଅମାପ ଆଶ୍ୱାସ । ଧନ୍ୟବାଦ ସହ ।।

କମଳାକାଂତ ଲେଂକା
(ପ୍ରାଧ୍ୟାପକ, ଭଦ୍ରକ କଲେଜ, ଭଦ୍ରକ)

[ସୌଜନ୍ୟ : ଦୈନିକ 'ସମ୍ବାଦ'-୧୪/୧୦/୮୯]

# କବିର ଫସଲ

୧. ସୁନା ଫସଲ (କବିତା) ୧୯୫୮
ପ୍ରକାଶକ : ପ୍ରମଦା ଲେଙ୍କା
କାଂତକୁଟୀର, ଇଚ୍ଛାପୁର, ବାଲେଶ୍ୱର

୨. ପ୍ରୀତି ଓ ପ୍ରତୀତି (କବିତା) ୧୯୬୩
କାଂତକୁଟୀର, ଇଚ୍ଛାପୁର, ବାଲେଶ୍ୱର

୩. ଉତ୍ତରଣ (ଦୀର୍ଘ କବିତା) ୧୯୬୬
କାଂତକୁଟୀର, ଇଚ୍ଛାପୁର, ବାଲେଶ୍ୱର

୪. ସ୍ମରଣ ବିସ୍ମରଣ (କବିତା) ୧୯୭୩
ଦାସ୍ ବ୍ରଦର୍ସ, ବ୍ରହ୍ମପୁର

୫. କବିତାର ମୁହଁ (କବିତା) ୧୯୭୪
ବିଜୟ ବୁକ୍‌ଷ୍ଟୋର, ବ୍ରହ୍ମପୁର

୬. ଅଂତତଃ ନିଶ୍ଚୁପ (କବିତା) ୧୯୭୫
ବିଦ୍ୟାମନ୍ଦିର, ଭଦ୍ରକ

୭. କବିତା - ଶ୍ରୀ ଓ ଧୀ (ସଂପାଦନା) ୧୯୭୭
ପଦ୍ମନାଭ ମିଶ୍ର, ଯାଜପୁର

୮. ସ୍ରୋତର ନାମ ରତ (କବିତା) ୧୯୭୮
(ରାଜ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ)
ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ,
କଟକ - ୨

୯. ନିତ୍ୟ ନିୟମିତ (କବିତା) ୧୯୭୮
ବୁକ୍ସ ଏଣ୍ଡ ବୁକ୍ସ, କଟକ୍ - ୨

୧୦. ନିଜ ସହ ଗୋଟେ ସାକ୍ଷାତକାର (ଦୀର୍ଘ କବିତା) ୧୯୭୮
ନିରୁପମା ରାୟ, ଯାଜପୁର, କଟକ

୧୧. କମଳାକାଂତଙ୍କ ଶ୍ରେଷ୍ଠ କବିତା (୧୯୭୯)
ଜଗନ୍ନାଥ ରଥ, କଟକ - ୨
୧୨. ଖସିବାର ବେଳ (କବିତା) ୧୯୮୦
ଗୋବିନ୍ଦଚନ୍ଦ୍ର ପାତ୍ର,
ଓଡ଼ିଶା ବୁକ୍ ଷ୍ଟୋର, କଟକ - ୨
୧୩. What I Look Like (Translated Poems) 1981
Om Printers, PURI - 1
୧୪. ଗୀତ ଗା'ନାରେ ପକ୍ଷୀ (କବିତା) ୧୯୮୨
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ - ୨
୧୫. ଚିତା ଅଂକା କାଂଥର ଛବି ଓ ପରିଧି ବାହାରେ
ଅପେକ୍ଷାରତ ପୃଥିବୀ (କବିତା) ୧୯୮୭
- ନବଲିପି ପ୍ରକାଶନୀ, ପୁରୀ - ୧
୧୬. ଦୁଃଖସହ କଥାବାର୍ତ୍ତା (କବିତା) ୧୯୮୭
ଓଡ଼ିଶା ବୁକ୍ ଷ୍ଟୋର, କଟକ - ୨
୧୭. ଉନ୍ମୋଚନ (କବିତା) ୧୯୯୧
ଗ୍ରନ୍ଥମନ୍ଦିର, କଟକ - ୨
୧୭. ଚିରାୟତ (କବିତା) ୧୯୯୧
ପୀତାମ୍ବର ମିଶ୍ର, ବିଦ୍ୟାପୁରୀ, କଟକ- ୨
୧୮. ପାଦେ ଆଗକୁ (କବିତା) ୧୯୯୪
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ - ୨